ଜାପାନିବାବୁଙ୍କ କେତୋଟି ଗଳ୍ପ

ଲେଖକ :
ସୁଧୀର କୁମାର ବିଜୟେନ୍ଦ୍ର ନାରାୟଣ

ପ୍ରକାଶିକା :
ଶ୍ରୀମତୀ ବନ୍ଦନା ଦାସ

ଦ୍ୱିତୀୟ ମୁଦ୍ରଣ :
( ୩୦୦୦ ଖଣ୍ଡ )
ନଭେମ୍ବର-୧୫
୧୯୮୯

ମୁଦ୍ରକ :
ନିଉ ଟାଉନ ପ୍ରେସ,
ମୋତିଗଞ୍ଜ,
ବାଲେଶ୍ୱର-୩

ପ୍ରଚ୍ଛଦ ଶିଳ୍ପୀ :
ଉଦୟ ଜେନା

ମୂଲ୍ୟ :
ପଚିଶ ଟଙ୍କା

Japanibabunka
Ketoti Galpa

**Written by :**
Sudhir Kumar Bijayendra
Narayan ( Japani )

**Publisher's Name :**
Srimati Bandana Das

**2nd Edition :**
( 3000 Copies )
November-15
1989

**Printer :**
New Town Press,
Motiganj,
Balasore-3

**Cover Design :**
Uday Jena

**Price :**
Rupees Twenty-five only




| ଗଳ୍ପ | ପୃଷ୍ଠା |
|---|---|
| ଜୀବନୀ | ୧ |
| ନଷ୍ଟ-ଚକ୍ଷର ମାୟା | ୭ |
| ଚିତ୍ରପଟ | ୧୫ |
| ମନୀଷା+ମଁ= କମଳିନୀ | ୨୦ |
| ପରିଚିତାର ପରିଚୟ | ୩୪ |
| ଅମୃତର ସନ୍ଧାନ | ୪୦ |
| ଯେତେ ମତ-ସେତେ ପଥ | ୪୫ |
| ନାୟକ | ୫୨ |
| କାଚଘରର ନାୟକ ନାୟିକା | ୫୭ |
| ନୀଡ଼ର ନାମ ଘର | ୬୩ |
| ତ୍ରିବାହୁ | ୬୮ |
| ରକ୍ତମାଂସର ଧ୍ୱନି | ୭୨ |
| ଜୟ ପରାଜୟ | ୭୬ |
| ମରୀଚିକା | ୮୨ |
| ଅମ୍ଳାନ ପ୍ରତିଭା-ଅଖିଳମୋହନ ପଟ୍ଟନାୟକ | ୮୭ |

ମା,

ତୁ ଗପ, କବିତା ଲେଖୁଥିଲୁ । ତୋରି କହାରୁ କିଛି ନେଇ ତୋ ହାତରେ ବହୁବର୍ଷ ତଳେ ଦେଇଥିଲି 'ପରିଚିତାର ପରିଚୟ ।'

ଆଜି ତୁ ସ୍ୱର୍ଗରେ । ତୋରି ସ୍ମୃତିରେ ଏଇ ଅଶ୍ରୁତର୍ପଣ ।

ହତଭଗା ପୁଅ
ଜାପୁ

# ପ୍ରଥମ ମୁଦ୍ରଣର ପ୍ରାକ୍‌କଥନ

ଏଇଟା ମୋର ଦ୍ୱିତୀୟ ଗଳ୍ପ ସଙ୍କଳନ । ପ୍ରାୟ ୨୦ ବର୍ଷ ବିତି ଯାଇଥିଲା, ପ୍ରଥମ ପ୍ରକାଶନ ପରେ । ସରକାରୀ ଚାକିରି, ବିଶେଷ କରି ଇଂଜିନିଅରିଂ ଡ଼ିପାର୍ଟମେଣ୍ଟରେ ମାନସିକ ତଥା ଶାରୀରିକ ଅବସ୍ଥାକୁ ସାହିତ୍ୟ କ୍ଷେତ୍ରରୁ ବହୁ ଦୂରକୁ ନେଇଯାଏ । ତଥାପି ସେଇ ଅସାହିତ୍ୟିକ ପରିସ୍ଥିତିରୁ ଘଟଣାବହୁଳ ଜୀବନର କେତେଟା ସ୍ମୃତିର ନିଛକ ସାଧାସିଧା କଥନକୁ ମୁଁ ଗଳ୍ପ ନାଁ ଦେଇ ଉପସ୍ଥାପନ କରୁଛି ।

ପ୍ରଥମ ଗଳ୍ପ ସଙ୍କଳନ 'ପରିଚିତାର ପରିଚୟ' ମୁଁ ଦେଇଥିଲି ବ୍ରହ୍ମପୁରର 'ସୃଷ୍ଟି ସୌରଭ' ମାଧ୍ୟମରେ । ବନ୍ଧୁ ସୁଦର୍ଶନ ଆଗ୍ରହ ଓ ସୁବାସ ପତି ଇତ୍ୟାଦିଙ୍କ ସ୍ନେହହିଁ ଏହାକୁ ପ୍ରକାଶ କରିବାରେ ସାହାଯ୍ୟ କରିଥିଲା ୧୯୬୨ ମସିହାରେ । ତାର ମୁଖବନ୍ଧ ଲେଖିଥିଲେ ବିଶିଷ୍ଟ ଗାଳ୍ପିକ ଶ୍ରୀଯୁକ୍ତ ବ୍ରହ୍ମାନନ୍ଦ ପଣ୍ଡା । ହଠାତ୍ ଦିନେ ୧୯୮୩ ମସିହାରେ ତାଙ୍କ ସହ ଦେଖାହୁଏ ଏବଂ ପ୍ରଥମ କଥା ସେ ପଚାରନ୍ତି "କଣ ଲେଖା-ଲେଖି ଚାଲିଚି ତ ?"

ମୁଁ ନିର୍ବାକ ହୋଇ ରହିଗଲି—ସାମାନ୍ୟ ଲଜ୍ଜିତ ମଧ୍ୟ ହେଲି । ସେ କହିଲେ—"ବ୍ୟସ୍ତ ହୁଅନା, ଲେଖା ଛାଡିଚ ଯଦି ଆଉ ଥରେ ଆରମ୍ଭ କର ।" ସେହି ଦିନ ପୁରୁଣା ଖାତା ସବୁ ପୁଣି ବାହାର କଲି । ଯା ଭିତରେ ପୂରା ଗୋଟେ ପାଣ୍ଡୁଲିପି ହଜି ଯାଇଥିଲା । ପିଲାଙ୍କ ପୁରୁଣା ଖାତା ସହ ବୋଧହୁଏ କାଗଜକିଣାଳିମାନଙ୍କ ପାଖକୁ ଚାଲି ଯାଇଥିଲା କିଲୋ ଓଜନରେ ।

ହଠାତ୍ ସେଦିନ ମୋ ସାନ ଭଉଣୀ ମୀନା ( ଶ୍ରୀମତୀ ଶୈଳଜା କୁମାରୀ ଅପରାଜିତା ମହାନ୍ତି ; ଶ୍ରୀ କବୀନ୍ଦ୍ର ପ୍ରସାଦ ମହାନ୍ତିଙ୍କ ସ୍ତ୍ରୀ ) ନିଜ ଲେଖା ଗଳ୍ପ ସଂକଳନଟିଏ ଧରାଇ ଦେଲା । ନାଁ ତାର "ଅଳସ ଅପରାହ୍ଣ ।" ଏକା ଥରକେ ବସି ପଢ଼ିଦେଲି । ମା' ମୋର ଲେଖୁଥିଲା ଗଳ୍ପ ଆଉ ଗୀତ । ବାବାତ ପୁରୁଣା ନାଟ୍ୟକାର- ପ୍ରାୟ ୨୦/୨୫ ଖଣ୍ଡ ରଚନା ତାଙ୍କର । ଏଣୁ ସାନ ଭଉଣୀର ଲେଖା ଅଭ୍ୟାସ ବଂଶଗତ । ବଢ଼ିଆ ଲେଖିଚି । ଉଠି କପାଳରେ ଚୁମାଟିଏ ଦେଇ ଆଶୀର୍ବାଦ କଲି–ଏମିତି ବହୁ "ଅଳସ ଅପରାହ୍ଣ"ର ସୁଯୋଗ ଦିଅନ୍ତୁ ଭଗବାନ୍ ମୋ ଭଉଣୀକୁ, ସାହିତ୍ୟ ଫୁଲଦାନୀରେ ନୂଆ ଫୁଲ ସଜାଇବାକୁ ।

ଫେରି ଆସି ମନକୁ ଲାଗିଲା 'କାହିଁକି ନୁହେଁ ?' ବିଶେଷ କରି ସ୍ତ୍ରୀ ବନ୍ଦନା, ଯାହାଙ୍କୁ ମୁଁ ମୋର ପ୍ରଥମ ବହିର ମୁଖବନ୍ଧରେ 'ଓଡ଼ିଆ ଜାଣିନି' ( ସେ ଓଡ଼ିଶା ବାହାରେ ଇଂରାଜୀ ମିଡ଼ିୟମରେ ଶିକ୍ଷିତା, ଏଣୁ ଓଡ଼ିଆ ପଢ଼ି ନାହାନ୍ତି ) ବୋଲି ଲେଖିଥିଲି, ସେ ମୋର ଲେଖା ସବୁ ବାହାର କରି ପ୍ରକାଶନର ବ୍ୟବସ୍ଥା କରିବାକୁ ଲାଗି ପଡିଥିଲେ ।

ଶୁଣେଛୁ ସାହିତ୍ୟାନୁରାଗୀ ଶ୍ରୀଯୁକ୍ତ ବ୍ରଜନାଥ ରଥଙ୍କ ସାହାଯ୍ୟରେ ପୁଣି ଏହି ଗଳ୍ପ ସଂକଳନର ପରିପ୍ରକାଶ । ସମୟ ନଥିଲା ସେଇ 'ହଠାତ୍ କୌଣସି ଏକ ଘଟଣା'ର ଅନୁଭବରୁ ଜନ୍ମ ନେଇଥିବା ଲେଖା ଗୁଡ଼ିକର ଭାଷା ତଥା ଗଠନ ଶୈଳୀଗତ ଭୁଲ ସୁଧାରିବାକୁ । ଯାହାହେଉ ସେମିତି ନେଇ ପଠାଇଲି ପ୍ରେସକୁ । ଧନ୍ୟ କହିବା ବ୍ରଜବାବୁଙ୍କୁ–ସେ ମଧ୍ୟ ପଛାଇଲେନି ଏ ଅସୁବିଧା ସତ୍ତ୍ୱେ ତାଙ୍କ ପ୍ରେସ୍‌ରେ ଛପାଇବାକୁ ।

ଶିଳ୍ପୀ ଉଦୟ ଜେନାଙ୍କ ଅକୁଣ୍ଠ ସାହାଯ୍ୟ ମିଳିବାରେ କିଛି ଅସୁବିଧା ହେଲନି । ସେ ଯେ ଖାଲି ପ୍ରଚ୍ଛଦପଟର କଳ୍ପନା ଓ ଅଙ୍କନ କରିଛନ୍ତି ସେତକ ନୁହେଁ, ଅନୁରୋଧ ରକ୍ଷାକରି ପ୍ରଚ୍ଛଦ ଛପାଇ ପଠାଇ ଦେଇଛନ୍ତି ମଧ୍ୟ । ତାଙ୍କ ଠାରେ ବି ମୁଁ ଋଣୀ ।

ବାଲେଶ୍ୱର

ତା ୩–୩–୮୭ ଖ୍ରୀ

ଜାପାନ

# ୨ୟ ମୁଦ୍ରଣ ପାଇଁ ପଦେ

ମାର୍ଚ୍ଚ ୮୭ ରୁ ଏ ଭିତରେ ଓଡ଼ିଆ ବହି ଯେ ବିକ୍ରୀ ହୋଇ ୨ୟ ମୁଦ୍ରଣ ଦରକାର ପଡେ ଏହା ନିଜେ ଅଙ୍ଗଲିଖ ନହେଲେ ମୁଁ ବିଶ୍ୱାସ କରି ନଥାନ୍ତି । ଅବଶ୍ୟ ବନ୍ଧୁବାନ୍ଧବ ପରିଚିତଙ୍କୁ ଉପହାର ତା' ଭିତରେ ଅଛି ।

ବ୍ରଜବାବୁଙ୍କୁ ସବୁଦିନେ ପାଣ୍ଡୁଲିପିରୁ ଛପାଇବା କଷ୍ଟ ମୁଁ ଦେଇ ଆସିଚି । ଆଜିବି ତାଙ୍କ ପାଖରେ ମୋର ଚତୁର୍ଥ ବହି ନବସ୍ତ । ଏଣୁ ଅନ୍ୟ ପ୍ରେସରେ ଦେଇ ତାଙ୍କ ଶ୍ରମ ଲାଘବ କରିବାକୁ ଚେଷ୍ଟା କରିଚି । ଉଦୟବାବୁଙ୍କୁ ପୁଣି ଅନୁରୋଧ ସେଇ ପୁରୁଣା ପ୍ରଚ୍ଛଦପଟଟାର ଛାପିବା ପାଇଁ ।

ଆମ ଅଫିସର ସାହିତ୍ୟ, କଳାପ୍ରେମୀ ଆକାଶବାଣୀ ତଥା ଓଡ଼ିଆ ଫିଲମର ଗୀତିକାର ରମାକାନ୍ତ ବାବୁଙ୍କ ଠାରେ ସମସ୍ତ ସାହାଯ୍ୟ ପାଇଁ ମୁଁ ବିଶେଷ ଭାବରେ ଋଣୀ ।

ବାଲେଶ୍ୱର

ତା ୩୦-୭-୮୯ ରିଖ

ଜାପାନ

# ଜୀବନୀ

ଆଜି ଜୀବନରେ ନୂଆ ଏକ ଅଧ୍ୟାୟ । ବଜ୍ରବାହୁର ବଡ଼ପୁଅ ପୁଣି ଗୋଡ ଦେଇଚି ରାଜନୀତିରେ—ସେ ଠିଆ ହୋଇଚି ମ୍ୟୁନିସିପାଲିଟି ଚେୟାରମେନ ପାଇଁ । ସେହି ଚେୟାରମେନ୍ ପଦ, ଯେଉଁଟା ତା ସାଆନ୍ତ-ବାପର ଥିଲା ରାଜନୈତିକ ଜୀବନର ପ୍ରଥମ ପାହାଚ । ଘରର ବୋହୂ ହୋଇ ଆସିବା ଗ୍ଚରିଟା ବର୍ଷ ହୋଇନି । ବଡ ଘର ବହୁପଣ ସରିନି । ଭେଟ ଦେବାକୁ ସ୍ୱାମୀ ସାଙ୍ଗରେ ବାହାରିବା ବେଳକୁ ଖାଇ ଉଗାରିଥା ଘରୁ ବହୁ ଆପତ୍ତି ସତ୍ତ୍ୱେ ସେ ଯାଇଥିଲେ ବାହାରି । ପରଥରକୁ ଭେଟ ପାଇଁ ପଗ୍ଚର ସଭା ମଧ୍ୟ - ସବୁ ବାଧା ବିଘ୍ନ ନମାନି ।

ଆଜି ବୟସର ଛାପରେ ଶରୀରଟା ସାମାନ୍ୟ କ୍ଳାନ୍ତ "ତା ବୋଲି ଭେଟ ଦେବେନି ! କଣ ବୟସ ହୋଇଚି ବୋଲି । ନିଶ୍ଚୟ ଦେବେ ସେ ।

ଜିଦ୍ କରି ଏତେ ଗୁଡାଏ ବାଟ ଗ୍ଚଲି ଗ୍ଚଲି ଯାଇଥିଲେ ସେ ।

ବୀଣାଦେବୀ ଫେରି ଆସି ଆଉ ଭିତରକୁ ଯାଇ ନପାରି ଦାଣ୍ଡପାରି ମେଲରେ ଥକ୍କା ହୋଇ ବସି ପଡ଼ିଲେ । ନାତି 'ସ୍ୱର' ସେଇ ଦାଣ୍ଡ ଦୁଆରୁ ମାରିଲା ଛୁ । ବୀଣାଦେବୀ ତା ଗତିପଥକୁ ଟିକେ ଗ୍ଚହିଁ ମନେ ମନେ ହସିଲେ । ଏମିତି ଗୋଟିକ ପରେ ଗୋଟିଏ ପୁଅଝିଅ ଓ ତା ପଛକୁ ନାତି ନାତୁଣୀ ସମସ୍ତେ ଆଗେଇ ଯାଇଛନ୍ତି । ମନେ ମନେ ଆସି

ଜମିଗଲ ବିଗତ ୬୫ ବର୍ଷର ଘରକରଣା ଭିତରେ ତାଙ୍କରି ରକ୍ତପୁଷ୍ଟ କେତେଯେ ଦାୟାଦ ତାଙ୍କୁ ପଛରେ ପକାଇ ଆଗେଇ ଯାଇଛନ୍ତି । ସତରେ କଣ ସେ ପଛରେ ପଡ଼ିଛନ୍ତି ? କାଇଁ ନା'ତ ସେମିତି କିଛି ଲାଗୁନି । ମନେହେଲା ଏଇମାନେ ସବୁ ବରଂ ପଛରେ, ତାଙ୍କ ପାଖକୁ ଧାଇଁବାକୁ ଚେଷ୍ଟା କରୁଛନ୍ତି । ସେ ଉପରକୁ ଚାହିଁଲେ । ହଠାତ୍ ସବା ଉପରେ ଅନ୍ଧାଳିଆ ଧୂଆଁ ଭିତରେ 'ସେ' ହସୁଥିଲେ ।

ଛାତିରେ ଏକ ଚମକ ପଶିଲା ବୀଣାଦେବୀଙ୍କର । 'ସେ' କାହିଁକି ଏମିତି ଠିଆ ହୋଇ ହସୁଛନ୍ତି ! ଏଇ ମେଜରେ ସେ ବସି ତାଙ୍କ କମ୍ରେଡ୍‌ମାନଙ୍କୁ ନେଇ ଗୁପ୍ତ ଆଲୋଚନାରେ ରତ ଥିଲାବେଳେ ବୀଣାଦେବୀ କଂଗ୍ରେସ ପାଇଁ ଇଲେକ୍‌ସନ୍ ମିଟିଂରୁ ଫେରି ଦାଣ୍ଡ ଅଗଣାରେ ପଶିଲା ବେଳକୁ ସେ ଏମିତି ଚାହିଁ ହସନ୍ତି । କିନ୍ତୁ କାହିଁ ରାଜନୈତିକ ଜୀବନର ପ୍ରଥମରୁ ଶେଷ ପର୍ଯ୍ୟନ୍ତ ଦୁଇଜଣଙ୍କର ପଥ ଭିନ୍ନ ହେଲେହେଁ ମୁହଁରେ ପଦେ କେବେ ସେ କିଛି କହି ନାହାନ୍ତି । ବରଂ ପ୍ରତ୍ୟେକ ମୁହୂର୍ତ୍ତରେ ତାଙ୍କର ଏମିତି ଏକ 'ହସ' ତାଙ୍କୁ ଯୋଗାଇ ଆସିଚି ଆଗକୁ ମାଡ଼ିଯିବାର ସାହସ ଓ ପ୍ରେରଣା । ହଠାତ୍ ସେ ଅନୁଭବ କଲେ, ୟାବି ହୋଇପାରେ ବର୍ତ୍ତମାନ ସୁଦ୍ଧା ସେ ନିଜେ ଠିକ୍ ବୁଝି ନାହାନ୍ତି କଣ ସେଇ ହସଟିର ତାତ୍ପର୍ଯ୍ୟ । ଜୀବନ ସାରା ସେ ଗ୍ରହଣ କରି ନେଇଥିଲେ ଏଇ ହସକୁ ତାଙ୍କ ଚଲାପଥର ପାଥେୟ ହିସାବରେ । କାରଣ ସେଇ ହସଟିରେ ସେ ଅନୁଭବ କରିଥିଲେ ସ୍ୱାମୀ' 'ଜୀବନାନନ୍ଦ'ଙ୍କ ଭିତରଟା ।

ଆଜି ଏତେବର୍ଷ ପରେ ଏଇ ଘଡ଼ିସନ୍ଧି ମୁହୂର୍ତ୍ତରେ ହଠାତ୍ ତାଙ୍କ ମନେପଡ଼େ, ହସଟିର ପ୍ରଥମ ସ୍ପର୍ଶ ତାଙ୍କୁ କିପରି ରୋମାଞ୍ଚିତ କରିଥିଲା;— କଲିକତା ପ୍ରେସିଡ଼େନ୍‌ସି କଲେଜର ସେ ଏକ ପ୍ରାଣୋଚ୍ଛଳ ସନ୍ଧ୍ୟା । କମେଡ ଜୀବନାନନ୍ଦଙ୍କ ଇଲେକ୍‌ସନ୍ ମିଟିଂରେ ତାଙ୍କ ଓଜସ୍ୱିନୀ ବକ୍ତୃତା ପରେ, କେମ୍ପସ କ୍ୟାଣ୍ଟିନରେ ବସି ଚା ଖାଉଁ ଖାଉଁ ବନ୍ଧୁମାନଙ୍କ ଗହଳରେ କମ୍ୟୁନିଜିମ ବିପକ୍ଷରେ ମନ୍ତବ୍ୟ କରୁଥିବା ସମୟରେ ଦୂରରୁ ଜୀବନାନନ୍ଦଙ୍କର ଏଇ ନୀରବ 'ହସ', କରିଥିଲା ତାଙ୍କୁ ଲଜ୍ଜିତ । ସେଇ

'ହସ'ର ଗାମ୍ଭୀର୍ଯ୍ୟ, ପୌରୁଷ ଓ ଔଦ୍ଧତ୍ୟ ସେତେବେଳେ ତାଙ୍କୁ କରିଥିଲା ପାଗଳୀ । ତାପରେ ଦୁଇଜଣ ଗଢିଥିଲେ ସଂସାର, ସମସ୍ତ ପ୍ରକାର ରାଜନୈତିକ ଚିନ୍ତାଧାରାକୁ ପଛରେ ପକାଇ ।

ପୁଣି, ବଡଭାଇଙ୍କ ମୃତ୍ୟୁରେ ଜୀବନାନନ୍ଦ ଯେତେବେଳେ ଭାଙ୍ଗି ପଡ଼ନ୍ତି, ସହର ଛାଡ଼ି ଗାଁକୁ ନଗଲେ, ଏତେ ବଡ଼ ଘରର ବ୍ୟବସ୍ଥା ନକଲେ, ପେଟକୁ ଦାନା ବ୍ୟବସ୍ଥା ନହେଲେ କଣ ରାଜନୀତି ବା ଦେଶସେବା କରିହୁଏ ? ଗାଁରେ କିନ୍ତୁ ଠିକ ପାରି ଉଠି ନଥିଲେ ଜୀବନାନନ୍ଦ । ଏତେ ଜମିର ଚାଷ, ପୋଖରୀ, ବାଡ଼ି ବଗିଚା ସବୁ ହଠାତ୍ ତାଙ୍କ ମନର ବିସ୍ତାରକୁ ଅକ୍ଟୋପାସ୍ ପରି ଆବୋରି ବସିବାକୁ ଚାହିଁଲା । ଆଉ ସେ ଯେତେବେଳେ ଅଣନିଃଶ୍ୱାସୀ; ଘରୁ ଗୋଡ଼ କାଢ଼ିଥିଲେ ବୀଣାଦେବୀ' ଏବଂ ମୁଣ୍ଡାଇ ନେଇଥିଲେ ସବୁ ବୋଝ । ପୁଣି କର୍ମମୁଖର ହୋଇଥିଲା ଜୀବନାନନ୍ଦଙ୍କ ସାମାଜିକ ଓ ରାଜନୈତିକ ଜୀବନ । ସହରରେ କାୟା ଓ ଗାଁରେ ସବୁ ମାୟା ନେଇ ଜୀବନାନନ୍ଦଙ୍କ ରାଜନୈତିକ ଜୀବନରେ ଏକ ପୂର୍ଣ୍ଣତା ପ୍ରାପ୍ତି ହେବାର ପ୍ରତିଦାନରେ ବୀଣାଦେବୀ ପାଇଥିଲେ ଆଉ କିଛି ନୁହେଁ–ସେଇ ହସ ଟିକକ ।

ଏଇ ଲମ୍ବା ଜୀବନରେ ଦୁଇଟି ପୁଅ ଆଉ ତିନିଟି ଝିଅଙ୍କର ଜନ୍ମ ତାଙ୍କ ଦୁଇଜଣଙ୍କ ଜୀବନକୁ ଏକ ଦୃଢ଼ ରଜ୍ଜୁରେ ବାନ୍ଧି ଦେଇଥିଲା । 'ସେ' ସବୁବେଳେ କହନ୍ତି–"ଦୁଇଟି ରତ୍ନ ଖଚିତ ହାରରେ ତିନିଟି ମୁକ୍ତା ମୁଁ ତମକୁ ପିନ୍ଧାଇ ଦେଇଛି । ସେମାନଙ୍କ ଛଡା ଆଉ ମୋର କିଛିନାହିଁ ଦେବାକୁ ତମକୁ ।" ଜୀବନାନନ୍ଦଙ୍କ ସମସ୍ତ ସାଂସାରିକ ବୋଝ ମୁଣ୍ଡରେ ଉଠାଇ ନେଇ ବୀଣାଦେବୀ ସୃଷ୍ଟି କରିଥିଲେ ଏହି ରତ୍ନ ଓ ମୁକ୍ତା ଗୁଡ଼ିକୁ; ଆଉ ଜୀବନାନନ୍ଦ ବୁଡ଼ି ରହିଥିଲେ ସହରର ସେହି ରାଜନୀତି ଓ ଜନ-ସେବାରେ । ଗାଁରେ ମୃଜଟାର ଯତ୍ନ ନେଇ ବୀଣାଦେବୀ ସହରକୁ ବିସ୍ତାର କରିଥିଲେ ଡ଼ାକପତ୍ରର ଛାୟା, ଫୁଲର ସୁଗନ୍ଧ ଓ ସୌନ୍ଦର୍ଯ୍ୟ । ଜୀବନାନନ୍ଦ ଯେଉଁଦିନ ମ୍ୟୁନିସିପାଲିଟିର ଚେୟାରମ୍ୟାନ ହେଲେ, ସିଧା ଭେଟଗଣ୍ଡି ପାଖରୁ ଧାଇଁ ଆସିଥିଲେ ଗାଁକୁ । ଆଉ ସେହି 'ହସ' ଦେଇଥିଲା ବୀଣାଦେବୀଙ୍କୁ ତାଙ୍କର ସମସ୍ତ ଆକାଂକ୍ଷିତ ପ୍ରାପ୍ୟ । ତାପରେ ବିଭିନ୍ନ

ପର୍ଯ୍ୟାୟରେ ବିଧାନସଭାରୁ ଲୋକସଭା—ସବୁ ବିଜୟର ସେଇ ଏକ ଆଶା—'ହସ'ଟିର ମାଧୁର୍ଯ୍ୟ ସେ ପାଇ ଆସିଚନ୍ତି ।

ଗୋଟିଏ ପରେ ଗୋଟିଏ ସନ୍ତାନ ଗାଁ ସ୍କୁଲରୁ ପ୍ରଥମ ଶ୍ରେଣୀରେ ପାଶ୍ କରି କଲେଜ ଡେଇଁ ଯେତେବେଳେ ମଣିଷ ପରି ମଣିଷ ହୋଇ ବାହାରିଚନ୍ତି, ବୀଣାଦେବୀ ପାଇଛନ୍ତି ତାଙ୍କର ସେହି ପ୍ରାପ୍ୟ 'ହସ'ଟି । ବଡପୁଅର ରେଲୱେ ଇଞ୍ଜିନିଅରିଂ ସର୍ଭିସ ପରୀକ୍ଷା ପାଇଁ ବୀଣାଦେବୀ ତାକୁ ନେଇ କଲିକତା ଯାଇଥିଲେ । ଦ୍ୱିତୀୟ ପୁଅର I.A.S. ପାଇଁ ସେ ବିଭିନ୍ନ ବହି ବାଛି ଯା ତା ହାତରେ ମଗାଇ ଦିନରାତି ତା ପଛରେ ଲାଗିପଡ଼ିଥିଲେ । ତା' ପରେ ନାତି ବଜ୍ରବାହୁ ଯେତେବେଳେ ପ୍ରଥମ ଶ୍ରେଣୀରେ M.A. ପାଶକରି କଂଗ୍ରେସରେ ମିଶି ବ୍ଲକ ଚେୟାରମ୍ୟାନ ହେଲା, ବୀଣାଦେବୀ ଓହ୍ଲାଇଥିଲେ ପ୍ରଚାର ପାଇଁ । ସେଦିନ ଠାରୁ ପୁଣି ସେ ଆରମ୍ଭ କରିଥିଲେ ରାଜନୈତିକ ଜୀବନ, ଯାହା ସେ ଭୁଲିଥିଲେ ସେଇ ୩୦ ବର୍ଷ ବୟସରେ ଗାଁ ଘରର ଝଞ୍ଜାଳ ହାତକୁ ନେବା ପରଠାରୁ । ନାତି ଓ ସ୍ୱାମୀ ଯେ ଦିନେ ଏହି ପଥରେ ପରସ୍ପର ବିରୋଧୀ ହୋଇ ଲଢିବେ ଏ ଭୟ ତାଙ୍କୁ କୁଣ୍ଠାରେ ପକାଇ ନଥିଲା, ଆଉ ଜୀବନାନନ୍ଦଙ୍କ ପାଖରୁ ମଧ୍ୟ ସେ ବାଧାର ଆଶଙ୍କା କରି ନଥିଲେ—ବରଂ ଯାହା ଆଶା କରିଥିଲେ —'ସେଇ ହସ ଟିକକ' ପାଇ ନୂତନ ଉନ୍ମାଦନାରେ ଆଗେଇ ଯାଇଥିଲେ ।

ହଠାତ୍ ପୁଣି ଥରେ ସେ ସାମ୍ନାକୁ ଚାହିଁଲେ । କେହି ନାହିଁ, ଏତେ ବଡ ପୁରଟା ଖାଲି ଲାଗୁଛି । ଝରଟାରେ ବୁଲି ବୁଲି ଫେରିଆସି ବୋଧହୁଏ ଟିକିଏ ଅବସାଦ ଅନୁଭବ କରୁଥିଲେ ବୀଣାଦେବୀ । ଗୋଡଟାକୁ ଲମ୍ବାଇ ଦେଲେ ସେ ମାଅିଟାକୁ ଟାଣିଆଣି । ଲମ୍ବା ନିଶ୍ୱାସଟା ବାହାରି ଆସୁ ଆସୁ ଆଉ କିଛି ଅତୀତର ସ୍ମୃତି ଅନ୍ତର ମଧ୍ୟରୁ ଟାଣି ଆଣିଲା ।

ଆଜି ପୁଅଝିଅ, ନାତିନାତୁଣୀମାନଙ୍କର ବିଭିନ୍ନ ବୟସର ବିଭିନ୍ନ କର୍ମମୁଖର ଜୀବନରେ କାହାରି କାହା ସହ ସମ୍ପର୍କ ନାହିଁ କହିଲେ ଚଳେ । ସତେ ଯେମିତି ଗୋଟିଏ ହାତରୁ ଅଜସ୍ର ଗୁଡ଼ି ଆକାଶରେ ଉଡ଼ି ବୁଲୁଛନ୍ତି

ବିଭିନ୍ନ ଉଚ୍ଚତାରେ, ବିଭିନ୍ନ ରଙ୍ଗରେ । ସମସ୍ତେ ଭିନ୍ନ ପଥରେ, ଉଚ୍ଚରୁ ଉଚ୍ଚକୁ ଉଠିବାର ପ୍ରୟାସ ମଧ୍ୟରେ । ଦ୍ୱନ୍ଦ୍ୱ, ହିଂସା ବା ଈର୍ଷାରେ ମନାନ୍ତର ବେଳେ ବୀଣାଦେବୀ ହାତମୁଠାରୁ ସୂତାଖିଅ ବାହାର କରି ସେ ଗଣ୍ଠି ଫିଟାଇ ଦେଇ ଗୁଡ଼ିମାନଙ୍କୁ ପୁଣି ଅଲଗା ଅଲଗା ଉଡ଼ିବାରେ ସାହାଯ୍ୟ କରି ଆସିଛନ୍ତି । ପ୍ରତିଟି ଗୁଡ଼ିର ଉଠପଡ ସହ ସେ ପ୍ରଚ୍ଛନ୍ନ ଭାବରେ ସଂଶ୍ଳିଷ୍ଟ ଏବଂ ପ୍ରାୟ ସମସ୍ତଙ୍କର ବିଭିନ୍ନ ବୟସରେ ସୁଖ ଦୁଃଖ ସହ ଜଡ଼ିତ । ଦରକାର ମୁତାବକ କାହାକୁ କାନ ଧରି ଶାସନ କରିବାଠୁ ଆରମ୍ଭ କରି କାହା ପାଇଁ ପ୍ରେମପତ୍ର ମଧ୍ୟ ଲେଖିବାକୁ ସେ ପଛାଇ ନାହାନ୍ତି । ଏବେବି ଏଇ ତିନି ଜେନେରେସନର ପ୍ରାୟ ସମସ୍ତେ ତାଙ୍କର ବନ୍ଧୁ । ପୁଅଝିଅ-ମାନଙ୍କର ବନ୍ଧୁତ୍ୱ' ସେ ସୃଷ୍ଟି କରିଥିଲେ ବାଲ୍ୟକାଳରୁ ସେମାନଙ୍କର ବିଶ୍ୱାସଭାଜନ ହୋଇ । କୌଣସି ସନ୍ତାନ ସେମାନଙ୍କ ଦୋଷ ଗୁଣ କେବେ ତାଙ୍କ ସମ୍ମୁଖରେ ଲୁଚାଇ ରଖିନଥିଲେ, ବରଂ ସବୁ ଦୋଷ ସହ ନିଜକୁ ଜଡ଼ାଇ ଦେଇ ବୀଣାଦେବୀ ସୃଷ୍ଟି କରିଥିଲେ ଏକ ଅସାମାନ୍ୟ ସମ୍ପର୍କ ନିଜ ସନ୍ତାନମାନଙ୍କ ସହ । ଆଉ ତା'ପର ଜେନେରେସନ ତାଙ୍କ ପିଲାଙ୍କ ପାଇଁ ଅସୁବିଧା ହେବାର କିଛି କାରଣ ନଥିଲା, ବରଂ ସେମାନଙ୍କ ପାଇଁ ସେ ଥିଲେ ଏକ ନିର୍ଭରଯୋଗ୍ୟ ଓକିଲ । ଏକାଧାରରେ ବନ୍ଧୁ ଗାଡ଼ିଆନ୍ ଓ ବେଙ୍କ ।

ସେଇ 'ହସ' ନେଇ ହଠାତ୍ ଦିନେ ସହରରୁ ନିଜ ଜିନିଷ ପତ୍ର ସବୁ ଧରି ସେ ପହଞ୍ଚି ଗଲେ । ହଠାତ୍ ସବୁ ଛାଡ଼ି ଗାଁକୁ ଏପରି ଫେରି ଆସିବା, ଏତେ ବର୍ଷ ପରେ ଆଶ୍ଚର୍ଯ୍ୟ ମନେ ହେଲା । କିନ୍ତୁ ଫେରି ଆସି ଦିନଗୁଡ଼ା ଯେପରି କଟିଲା, ମନେହେଲା ସତେ ଯେମିତି ଏକ କର୍ମବ୍ୟସ୍ତ ଦିନର ଅପରାହ୍ନରେ ବିଛଣାରେ ଗଡ଼ି ଥକକା ମେଣ୍ଟାଇବା ପରି । ଘରୁ କିଛିଦିନ କୁଆଡେ ଗଲେନି ସେ । ଦେହ କିଛି ଖରାପ ନାହିଁ; ଖାଇବା ଶୋଇବା ଠିକ୍ ଚାଲିଥାଏ । ବୀଣାଦେବୀ ଭୀଷଣ ବ୍ୟସ୍ତ । ସକାଳୁ ରାତି ପର୍ଯ୍ୟନ୍ତ ଜଣେ କାର୍ଯ୍ୟବ୍ୟସ୍ତ ଲୋକ ଏମିତି ଅଳସୁଆ ହୋଇ ବସି ରହୁଚି–ପଚାରିଲେ ସେହି 'ହସ' । ବର୍ତ୍ତମାନ ବୀଣାଦେବୀଙ୍କ 'ହସଟା' ଟିକିଏ ଦୁର୍ବୋଧ୍ୟ ମନେହେଲା । ଏମିତି ତାଙ୍କୁ ମାସେ ଧରି ଖାଲି ଘରେ ବସିବାର କେହି କେବେ ଦେଖିନାହିଁ । ପିଲାପିଲି ସବୁ ଏହି ଆଶ୍ଚର୍ଯ୍ୟ

କଥାଟା ପଚାରିଥାନ୍ତେ ପ୍ରଘଟ କରି ପକାଇଲେ । ବନ୍ଧୁବାନ୍ଧବ ଓ ଶୁଭଚିନ୍ତକ ଯେ ଯୁଆଡ଼େ ଥିଲେ ଆସି ବୁଝିଗଲେ । 'କଣ ହେଉଚି ?' ପଚାରିଲେ ସେ ହସି ହସି କହନ୍ତି 'କାହିଁ କିଛି ନାହିଁ ।' ସତରେତ କିଛି ନାହିଁ ।

ସେମିତି ନାଲି ଟକ୍ ଟକ୍ ପାଚିଲା ଆମ୍ବ ପରି ଦେହ । ଗହଳିଆ ଧଳାବାଳ ସବୁ ଟୋପି ପରି ମୁଣ୍ଡରେ । ଲମ୍ବା ଧାରୁଆ ନାକ ତଳେ ଧଳା ଧଳା ପୁରୁଷିଆ ନିଶ, ଆଉ ତା ତଳକୁ ଜୀବନଜୟୀ ସେହି ହସ । ବୀଣାଦେବୀ ଭିତରେ ଭିତରେ ସାମାନ୍ୟ ଭୟ ପାଉଥିଲେ । ବାହାରୁ କିଛି ବ୍ୟତିକ୍ରମ ନାହିଁ, ଏଣୁ କିଛି ଅନୁମାନ କରି ପାରୁନଥିଲେ । ସେଦିନ ସବୁଦିନ ପରି ଖାଇ ପିଇ ଶୋଇବା ଘରେ ଆସି ଅନେକ ଗପସପ ପରେ ଆଦର କରି ଶୋଇଲେ, ଆଉ ସକାଳୁ ଉଠିଲା ବେଳକୁ ସେ ନାହାନ୍ତି । ମୁହଁରେ ଲାଖି ରହିଚି ସେଇ ହସରୁ ଟେନାଏ । ମହା ଆଗମରେ ସେ ବିଦାୟ ନେଇ ଯାଇଛନ୍ତି ।

ବୀଣାଦେବୀ କାନ୍ଦିଥିଲେ । ସେ ନିଜକୁ ପ୍ରବୋଧ ଦେବାକୁ ଚେଷ୍ଟା କରିନଥିଲେ । ଆଜି ନହେଲେ କାଲି ଯିବାର କଥା ଗଲେ, ଏକଥା ସେ ମାନିବାକୁ ନାରାଜ । ଧୀର ଧୀର ଲୁହ ସହ ସେ ହୁଏତ ସେଇ ହସରୁ ଟେନାଏକୁ ପାଥେୟ କରି ବାକିତକ କାମ ଶେଷ କରିବାକୁ ପ୍ରତିଜ୍ଞାବଦ୍ଧ ହୋଇଥିଲେ । ବସୁ ବସୁ ତନ୍ଦ୍ରା ଆସି ଯାଇଥିଲା । ସାମ୍ନା ମେଲାରେ ସେ ଯେମିତି ଠିଆ ହୋଇଛନ୍ତି । ମୁହଁରେ ସ୍ମିତ ହସର ଟେନାଟି ଧରି ତାଙ୍କୁ ଅନାଇ 'ସେ' ଛିଡ଼ା ହୋଇଛନ୍ତି । ବୀଣାଦେବୀ ପଚାରିଲେ 'କଣ ହସୁଛ ଯେ' ! କିଛି ଉତ୍ତର ପାଇବା ପୂର୍ବରୁ ତାଙ୍କ ତନ୍ଦ୍ରା ଭାଙ୍ଗିଗଲା । ଆଖି ଖୋଲି ସେ ସେମିତି ଚାହିଁ ରହିଲେ । ସତ୍ୟ ଆଉ ସ୍ୱପ୍ନ ଭିତରେ ପାର୍ଥକ୍ୟ ମାତ୍ର ସେଇ 'ହସ' ।

ସେମିତି ସେ ଚାହିଁ ରହିଲେ ସେଇ ମେଲାକୁ । ବଳୁବାବୁ ଆଜି ତାର ପୋଲିଂରେ ସଫଳତାର ସୂଚନା ପାଇ ପ୍ରଥମ ଆଶୀର୍ବାଦ ନେବାକୁ ଧାଇଁ ଆସି ବୁଢ଼ୀମା, ବୁଢ଼ୀମା, କହି ପାଟି କରି ଆଗେଇ ଆସିବା ବେଳକୁ ବୀଣାଦେବୀ ସେଇମିତି ଚାହିଁ ରହିଥିଲେ ଆଗ ମେଲାକୁ ।



# ନଷ୍ଟ-ଚକ୍ଷୁର ମାୟା

ଫଟୋଟିରେ ସ୍ନିଗ୍ଧତାର ସାଫଲ୍ୟ ମୁଁ ଉପଭୋଗ କରୁଥିଲି । ଲକ୍ଷ୍ୟ କରୁଥିଲି ମସୃଣ ଗଣ୍ଡଦେଶକୁ ଯେଉଁଠି ଖେଳୁଥିଲା ଉଜ୍ଜ୍ୱଳତାର ଢେଉ, ଆଉ ତାରି ଉପରକୁ କଳା ଆୟତ ଭସାଣିଆ ଆଖିର ଗଭୀରତା । ଦୀର୍ଘ, ସରୁ କିନ୍ତୁ ଘନ ଭ୍ରୂଲତା ଦୁଇଟି ଆଙ୍କି ହୋଇ ଯାଇଥିଲା ଠିକ୍ ଧନୁ ପରି—ସତେ ଅବା ମୁଖମଣ୍ଡଳର ପ୍ରତ୍ୟେକ ଅଂଶ ଅନ୍ୟ ଅଂଶର ସୌନ୍ଦର୍ଯ୍ୟ ବୃଦ୍ଧି ଲାଗି ଉଦ୍ଦିଷ୍ଟ । ଋଜୁତାର କପାଳରେ ବାଳର କେତୋଟି କେଶ ସୁନ୍ଦର, ମନୋମୁଗ୍ଧକର—ସତେ ଅବା ପବନର ହିଲ୍ଲୋଳକୁ ଅପେକ୍ଷା କରି ରହିଚି । ତାପରେ ଆହୁରି ଉପରକୁ ଘନ କେଶରାଶିର ସମ୍ଭାର ।

ଭଦ୍ରଲୋକ ହଠାତ୍ ମୋ ଆଡ଼କୁ ମୁହଁ ବୁଲାଇଲେ । ମୁଁ ତାଙ୍କ ଆଖିରେ ଧରା ନପଡ଼ିବା ପାଇଁ ଅନ୍ୟ ଆଡକୁ ମୁହଁ ବୁଲାଇଲି । କିନ୍ତୁ ବେଶୀ ସମୟ ବାହାରକୁ ଚାହିଁ ରହି ପାରିଲିନି । ପୁଣି ଆଖି ବୁଲାଇଲି ସେଇ ସୌନ୍ଦର୍ଯ୍ୟର ମାଧୁରୀ ଉପରକୁ । ଫଟୋଟି ଏପରି ହାତରେ ଧରି ବସିବାର ଅର୍ଥ କଅଣ ।

କେଉଁଠି ସେ ଓହ୍ଲାଇବେ ଜାଣିନି—ବସ୍‌ରେ କେତେ ସମୟ ବା, ନିହାତି ବେଶୀ ହେଲେ କେତୋଟି ଘଣ୍ଟାର ସୁଯୋଗ ମାତ୍ର । ଏଣୁ ବାରମ୍ବାର ଚାହିଁବାରେ ଲଜ୍ଜା ବା ଅଭଦ୍ରତା କରିବାରେ ମୁଁ ଦ୍ୱିଧା ବୋଧ କରିନଥିଲି, ହେଉ ପଛେ ଭଦ୍ରଲୋକଙ୍କ ସ୍ତ୍ରୀ ବା ଘରର ଅନ୍ୟ କାହାରି ଫଟୋ ।

ସୁନ୍ଦର ସରୁ ଧାର ନାକ ତଳେ ସୂକ୍ଷ୍ମ ତୂଳି ଧରି ଅଙ୍କା ପତଳା ଗୋଲପି ଅଧର । ମୁଁ ମୁଗ୍ଧ ହୋଇ ବହୁ ସମୟ ଧରି ଚାହିଁ ରହିଲି । ଭାବୁଥିଲି– ସତରେ ସୃଷ୍ଟି କେତେ ସୁନ୍ଦର । ଏଇ ସୁନ୍ଦର ସୃଷ୍ଟିର କର୍ତ୍ତାଙ୍କୁ ମୁଁ ମନେ ମନେ ଧନ୍ୟବାଦ ନଦେଇ ରହି ପାରୁନଥିଲି । ସୁନ୍ଦର ତୃପ୍ତିର ଅବସାଦ ନାହିଁ । ସୌନ୍ଦର୍ଯ୍ୟ ଏକ ନିଶା ନୁହେଁତ ଆଉ କଣ ? ଭଦ୍ର ଅଭଦ୍ର ଜ୍ଞାନ ନାହିଁ, ନିହାତି ଲଜ୍ଜାହୀନ ପରି ଏକଲୟରେ ଚାହିଁ ରହିଥିଲି ସେଇ ପ୍ରେମ ଉପରେ ତୋଳା ଚିତ୍ରଟିକୁ ।

ଶେଷରେ ମୁଁ ତାଙ୍କ ସହ ପରିଚୟ ସ୍ଥାପନ କରିବାକୁ ସ୍ଥିର କଲି । ଠିକ୍ ମୋରି ପାଖ ଗୋଟେ ସିଟ୍ ଛାଡ଼ି ବସିଥିଲେ ସେ । ମୁଁ ତାଙ୍କ ହାତରେ ଟିପ ମାରିଲି । ସେ ମୁହଁ ବୁଲାଇ ମୋ ଆଡକୁ ଚାହିଁଲେ ।

ମୁଁ ହଠାତ୍ କଣ କହିବି ସ୍ଥିର କରି ପାରିଲିନି । କଣ ସେ ଭାବି ପାରନ୍ତି ! ହୁଏତ ମୋର ହଠାତ୍ ଏପରି ବ୍ୟବହାରରେ ସେ ଟିକିଏ ବ୍ୟସ୍ତ ହୋଇ ପଡ଼ିଲେ ।

ମୁଁ ଟିକିଏ ରହି କହିଲି–

'କ୍ଷମା କରିବେ, ଆପଣଙ୍କ ପରିଚୟ ପଚାରି ପାରେ କି ?'

ସେ ପ୍ରଥମେ ଅପ୍ରସ୍ତୁତ ଜଣାଗଲେ, କିନ୍ତୁ ପରକ୍ଷଣରେ ତାଙ୍କ ମୁଖରେ ଟିକିଏ ହସର ରେଖା ଦେଖାଦେଲା ।

ହଠାତ୍ ଏଇ ହସ ମୋ ମନରେ ଭାବାନ୍ତର ଆଣିଲା । ସେ କଣ କହିବାକୁ ଯାଉଥିଲେ–ମୁଁ ହଠାତ୍ ତାଙ୍କୁ ଚିହ୍ନି ପାରି ଚିତ୍କାର କରି ଉଠିଲି–

'ଆରେ ସୁବ୍ରତ !' କହୁ କହୁ ମୁଁ ତା ହାତକୁ ଧରି ତା ଆଖିରୁ ଗଗଲସ୍‌ଟା ବାହାର କରିଦେଲି । କିନ୍ତୁ ଏ କଣ ? ଚକ୍ଷୁର ଜ୍ୟୋତି ନାହିଁ ।

ତା ମୁହଁରେ ଠିକ୍ ସେମିତି ହସ ।

ମୁଁ ଟିକିଏ ଅପ୍ରତିଭ ହେଲି ଏବଂ ପରିଚୟ ଦେଲି । ସେ ମଧ୍ୟ ହଠାତ୍ ଏତେ ଦିନ ପରେ ଏକ ବାଲ୍ୟବନ୍ଧୁକୁ ପାଇ ଖୁବ୍ ଖୁସି ହୋଇ ଉଠିଲା । ଟିକିଏ ଛାଡ଼ି, ପ୍ରଥମ ଆନନ୍ଦର ଢେଉ କାଟି କହିଲା–

"ଗଗଲସ୍‌ଟା ଭଲ ସିନା ଖୋଲି ଦେଲୁ, ହେଲେ ଚିହ୍ନିବି କିମିତି କହତ ?"

"କିପରି ତୋର ଚକ୍ଷୁ କେବେ ନଷ୍ଟ ହେଲା ସୁବ୍ରତ ?"

ତା ପ୍ରଶ୍ନ ଉପରେ ମୁଁ ପ୍ରଶ୍ନ କରି ବସିଲି ।

"ସେ ଏକ ଲମ୍ବା କଥା ପରେ ଶୁଣିବୁ ।"

"କିନ୍ତୁ ମୋର ଯେ ଆଖି ଥାଇବି ମୋରି ସାମ୍ନାରେ ତୋତେ ଏତେ ଡେରି ହେଲା ଚିହ୍ନିବାକୁ; ଅବଶ୍ୟ ମୋତେ ତୁ ଦୋଷ ଦେଇ ପାରିବୁନି । ତୋର ଏଇ ନୀଳକଣ୍ଠୀ ଦାଢ଼ୀ–ଏଣେ କେତେ ବର୍ଷର ଚଫାତ୍ କହତ ? ଖୁବ୍ କମ୍‌ରେ ୨୦ଟା ବର୍ଷରୁ କମ୍ ହେବନି ।"

ମୁଁ ନିହାତ ପ୍ରଗଲ୍‌ଭ ହୋଇ ଉଠିଥିଲି ।

ସୁବ୍ରତ ଓ ମୁଁ ସାଙ୍ଗ ହୋଇ ଦୁଇ ବର୍ଷ ସ୍କୁଲରେ ପଢ଼ିଥିଲୁ–ତା' ପରେ କଲେଜରେ ଭର୍ତ୍ତି ହେଲୁ–ନିହାତି ଅନ୍ତରଙ୍ଗ ହୋଇ ଉଠିଥିଲୁ କହିଲେ ଚଳେ । କିନ୍ତୁ ହଠାତ୍ ସେ ପଢ଼ା ଛାଡ଼ି ଦେଲା । ଅବଶ୍ୟ ସଂସାର ଚଳାଇବା ପାଇଁ ଯେ ତାର ଅଧିକ ବିଦ୍ୟାର ଦରକାର ଥିଲା ତା ନୁହେଁ । ଯଥେଷ୍ଟ ଧନ ସମ୍ପତ୍ତିର ଏକମାତ୍ର ଉତ୍ତରାଧିକାରୀ ଥିଲା ସେ । ତଥାପି ଖୁବ୍ ଭଲ ଭାବରେ ବି: ଏ: ପାସ କରି ହଠାତ୍ ପଢ଼ା ଛାଡ଼ି ଦେବାର କିଛି ଦରକାର ନଥିଲା । ତା ପରେ କିଛି ଦିନ ତା ସହ ଚିଠିପତ୍ରର ଆଦାନ ପ୍ରଦାନ ଥିଲା । କିନ୍ତୁ ଧୀରେ ଧୀରେ ସମୟ ମଣିଷକୁ ସ୍ୱ-ଗତିପଥରେ ଦୂରକୁ ଦୂରେଇ ଦେଲା । ଏକ ରକମ ଭୁଲି ଯାଇଥିଲି କହିଲେ ଚଳେ ।

ଏତେ ଚିନ୍ତା ଭିତରେ ହଠାତ୍ ମନେ ପଡ଼ିଲା ସେଇ ମାଧୁରୀ। ତା ହାତକୁ ପୁଣି ଚାହିଁଲି, ପଚାରିଲି–

"ଏଇଟା ?"

ସେ କିଛି ନକହି ମୋ ହାତକୁ ଫଟୋଟି ବଢ଼ାଇ ଦେଲା। ମୁଁ ଆଗ୍ରହର ସହ ଆଣି ନିରୀକ୍ଷଣ କରି ଦେଖିଲି ଫଟୋଟା ଗୋଟାଏ ପେଣ୍ଟିଂ। ଦୂରରୁ ଅବଶ୍ୟ ଠିକ୍ କେମେରା ଉଠା ଫଟୋ ପରି ଦେଖା ଯାଉଥିଲା। ଶିଳ୍ପୀ ହାତର ନିଖୁଣ ଛବି–ସେ ହାତର ପ୍ରଶଂସା ନକରି ରହି ହୁଏନି। ମୁଁ ସେମିତି ମୁଗ୍ଧ ହୋଇ ଦେଖୁଥିଲି। ମୋ ଚିନ୍ତାରେ ବାଧା ଦେଇ ସେ କହିଲା–

"ମୁଁ ଜାଣେ ତୁ ତାରି ମୁଖମଣ୍ଡଳର ମାଧୁରୀକୁ ଦେଖି ମୁଗ୍ଧ ହୋଇ ଚାହିଁ ରହିଛୁ।"

ମୁଁ ଲଜ୍ଜିତ ହେଲି।

ତା ହାତକୁ ଫଟୋଟି ଫେରାଇ ଦେଲି।

ପଚାରିଲା–

"କିଏ ଜାଣୁ ?" ଟିକିଏ ରହି "ଅନୁମାନ କରି କହତ ଦେଖି।"

ପଢ଼ା ସମୟଟା ସାରା ତାର ପ୍ରଧାନ କାମ ଥିଲା ପେଣ୍ଟିଂ। କାହାଠି ପାଖରୁ ସେ ଶିଖିନି, ତଥାପି ଅତି ପିଲା ଦିନରୁ ତା ହାତରେ କାମ ଅତି ସୁନ୍ଦର ଓ ନିର୍ଭୁଲ ହେଉଥିଲା।

ମୁଁ ତାର ପ୍ରଶ୍ନ ଏଡ଼ି ଦେବାକୁ ଯାଇ ପଚାରିଲି–

"ତୁ ନିଜେ ଆଙ୍କିଚୁ ନା ?"

ଏହା କହି ପୁଣି ତା ହାତରୁ ଫଟୋଟି ଆଣିବାକୁ ଧରିଲି । ସେ ଟିକିଏ ହସି ଦେଇ ଫଟୋଟିକୁ ମୁହଁମାଡ଼ି ନିଜ କୋଳ ଉପରେ ରଖି ଦେଇ କହିଲ—

"ନା ନା, ତୁ ଆଜି ମୋ ଘରେ ଓହ୍ଲାଇ ଗୋଟାଏ ଦିନ ନ ରହିଲେ ଛାଡ଼ିବିନି । ସେତେବେଳେ ରକ୍ତ ମାଂସରେ ଦେଖିବୁନି ?"

ଛାତ୍ର ଜୀବନରେ ତାର ସବୁବେଳେ ଗୋଟାଏ ବଡ ଆକାଂକ୍ଷା ଥିଲ ସୁନ୍ଦରୀ ସ୍ତ୍ରୀ ସେ ବାହାହେବ । ଏମିତି ସନ୍ଧ୍ୟା ନାହିଁ, ସେ ମୋ ପାଖରେ ତା ଭବୀ ପତ୍ନୀର ସୌନ୍ଦର୍ଯ୍ୟ ବର୍ଣ୍ଣନା ନ କରିଚି । ସାହିତ୍ୟରେ ତାର ପାରଦର୍ଶିତା ଥିଲ, ଏଣୁ ରୂପ ବର୍ଣ୍ଣନାରେ ସେ ଏପରି ଏକ ସୁନ୍ଦର ନାରୀ ମୂର୍ତ୍ତି ଆଣି ଛିଡା କରୁଥିଲ ଯେ ମୁଁ ମଧ୍ୟ ମନେ ମନେ ସେହିପରି ଏକ ସୁନ୍ଦରୀ ନାରୀ ନେଇ ତାକୁ ଈର୍ଷା କରୁଥିଲି । ଭବୁଥିଲି ସତରେ ଯଦି ତା ବର୍ଣ୍ଣନାର ଅନୁରୂପ ନାରୀ ସେ ପାଏ ତେବେ ସେ ଏଇ ପୃଥିବୀର ସବୁଠାରୁ ଭଗ୍ୟବାନ ।

ଆଉ ବର୍ତ୍ତମାନ ସତରେ ସେ ପାଇଚି ଜାଣି କୋଡ଼ିଏ ବର୍ଷ ପୂର୍ବରୁ ଯଦିଓ ମୋ ମନରେ ଈର୍ଷା ହୋଇଥାଆନ୍ତା, ଆଜି କିନ୍ତୁ ଆନନ୍ଦ ଜାତ ହେଲ । ତଥାପି ମନେ ମନେ ପୁଣି ସେଇ ଚିତ୍ରରେ ନାରୀର ରୂପ ମନେ ପକାଇ ମଁ କିପରି ଏକ ଆନନ୍ଦ ଅନୁଭବ କଲି ଯେ ଖୁବ୍ କମ୍ ସମୟ ମଧ୍ୟରେ ସେଇ ରୂପକୁ ରକ୍ତ-ମାଂସରେ ଦେଖି ପାରିବି ।

ଶୁଣିଥିଲି, ବହୁତ ଦିନ ପର୍ଯ୍ୟନ୍ତ ସୁବ୍ରତ ବାହା ହୋଇନି, ତାର କାରଣ ମନ ମୁତାବକ ସ୍ତ୍ରୀ ତାକୁ ମିଳିନି । ଯେ ପର୍ଯ୍ୟନ୍ତ ସେ ମୋ ପାଖକୁ ଚିଠି ଦେଉଥିଲ ଲେଖୁଥିଲ ଯେ ତାର ବର୍ତ୍ତମାନ କାମ ହେଲ 'ଭ୍ରମଣ' ଓ ଉଦ୍ଦେଶ୍ୟ ହେଲ 'ଖୋଜିବା' । ମନେ ମନେ ମୁଁ ସେତେବେଳେ ହସିଥିଲି; କିନ୍ତୁ ସେ ମନ ଦେଇ ଖୋଜିଛି ନିଶ୍ଚୟ । ନ ହେଲେ କିପରି ଏଇ ନାରୀର ସେ ସନ୍ଧାନ ପାଇଲ, ଯାହାର ସୌନ୍ଦର୍ଯ୍ୟ ତାର ବର୍ଣ୍ଣନାର ରୂପକୁ ପଛରେ ପକାଇ ବହୁତ ଆଗେଇ ଯାଇଛି ।

ବସ ଛିଡ଼ା ହେଲ । ମୋର ଆହୁରି ଆଗକୁ ଯିବାର ଥିଲେ ମଧ୍ୟ ତାର ବାଧ୍ୟବାଧକତାରେ ଓହ୍ଲାଇବାକୁ ପଡ଼ିଲ । (ବାଧ୍ୟବାଧକତା ଅବଶ୍ୟ ଖାଲି ବାହାରକୁ) । ସ୍ୱବ୍ରତର ସଙ୍ଗେ ଆଗେଇ ଗ୍ଲଲିଲୁ ।

ସୁନ୍ଦର ବଗିଗ୍ଲ ଅତିକ୍ରମ କରି ଆମେ ଯେଉଁ ଘରେ ପ୍ରବେଶ କଲୁଁ ମୁଁ ତା' ଦେଖି ମୁଗ୍ଧ ହୋଇଗଲି । ଖାଲି ଯେ ସ୍ୱବ୍ରତର ଧନର ପ୍ରାଚୁର୍ଯ୍ୟ ନେଇ ଘରର ସୌନ୍ଦର୍ଯ୍ୟ ବଢି ଉଠିଥିଲ ତା ନୁହେଁ, ବରଂ ଧନର ସୂଚନା ଯେତେ କମ ରଖାଯାଇ ମନର ସୌନ୍ଦର୍ଯ୍ୟଜ୍ଞାନର ପରିଚୟ ଦେଉଥିଲ । ମନେ ମନେ ମୁଁ ଭବିନେଲି ସତରେ କି ସୁନ୍ଦର ସମନ୍ୱୟ । ଟିକିଏ ଈର୍ଷା ବୋଧହୁଏ ଅନୁଭବ କଲି ।

ଡ୍ରଇଂରୁମ ଅତିକ୍ରମ କରି ଭିତର ବାରନ୍ଦାକୁ ସେ ମୋତେ ଟାଣି ନେଲ । ସବୁ ଜାଗାରେ ମୁଁ ଲକ୍ଷ୍ୟ କଲି ଏକ ସୁନ୍ଦର ରୁଚିର ସ୍ପର୍ଶ । ଘର ସାରା ଏକ ଶୁଚି ଶୁଚି ଭବ ; କିପରି ଏକ ପବିତ୍ର ପରିଷ୍କାର ପରିଚ୍ଛନ୍ନତାର ଛିମ୍ ଛିମ୍ ନୀରବ ଧ୍ୱନୀ । ମୁଁ ସେଇ ସୁନ୍ଦରୀଙ୍କୁ ପ୍ରଶଂସା ନ କରି ରହି ପାରିଲିନି ।

ହଠାତ୍ ସ୍ୱବ୍ରତର ଡାକରେ ଆର ଘର ଭିତରୁ ବାହାରି ଆସିଲେ ଜଣେ ମହିଳା । ମୁଁ ତାଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇ ଗ୍ଲହିଁ ରହିଲି ।

ସେ ଆଗେଇ ଆସି ସ୍ୱବ୍ରତର ହାତ ଧରିନେଲେ । ସ୍ୱବ୍ରତ ତାଙ୍କୁ କୋଳାଗ୍ରତ ପ୍ରାୟ କରି କହିଲ–

"ସୁଚି ! ଦେଖିଲ କାହାକୁ ମୁଁ ଆଣିଚି; ସେ ତୁମକୁ ଦେଖିବାକୁ ଆସିଚି ।"

ଟିକିଏ ରହି ପୁଣି କହିଲ–"ତମ ଫଟୋକୁ ସେ ବାରମ୍ବାର ଲକ୍ଷ୍ୟ କରି ଦେଖୁଥିଲ । ଯା କଥା ମୁଁ ପ୍ରାୟ ତମକୁ କହେ, ଯାରି ପାଖରେ ମୁଁ ସବୁଦିନେ ତୁମର ରୂପ ବର୍ଣ୍ଣନା କରି ଆସିଚି ।"

ଟିକିଏ ରହି ମୋତେ ଲକ୍ଷ୍ୟ କରି ପୁଣି କହିଲ—

"କଣ ଦେଖିଲୁ ? ଏ ବୟସରେ ଯଥେଷ୍ଟ ନ ହେଲେ ମଧ୍ୟ ସେଇ ତୁଳୀ ଅଙ୍କା ସୌନ୍ଦର୍ଯ୍ୟ ଅପେକ୍ଷା କଣ ଢେର ବେଶୀ ସୌନ୍ଦର୍ଯ୍ୟ ନାହିଁ ?"

ମୁଁ ନୀରବ ରହିଲି ।

ହଠାତ୍ ସୁଚରିତା ଦେବୀ କହିଲେ—

"ହେଉ ହେଲ, ସେ ଦେଖିଲେଣି । ସକାଳୁ ଆସିଚନ୍ତି, ସେ ଗାଧୋଇବେନି, ଖାଇବେନି ? କଣ ନା ଦେଖ, ସତରେ ତମର—"

ତା କଥାରେ ବାଧା ଦେଇ ସୁବ୍ରତ ପୁଣି କହିଲ—

"ଏଇ ଦେଖ, ସବୁବେଳେ କହିବ ମୁଁ କୁଆଡେ ଭୁଲ କରୁଚି । ମୋର ଆଖି ନାହିଁ ବୋଲି ମୁଁ କଣ ଜାଣି ପାରୁନି । ସେ କୁଆଡ଼େ ସୁନ୍ଦର ନୁହଁ—ତୁ କହିଲୁ ।"

"ହଉ ଥାଉ ଥାଉ ହସି ହସି ସୁଚରିତା ଦେବୀ ତାକୁ ଟାଣିନେଲେ । ମୋତେ ଡାକି କହିଲେ—

"ଆପଣ ଆସନ୍ତୁ ଭିତରକୁ ।"

ମୁଁ ଉଠିଗଲି । ଗାଧୁଆ ଘର ଦ୍ୱାର ଦେଖାଇ ଦେଇ ସୁଚରିତା ଦେବୀ କହିଲେ—

"ବିବାହ ପୂର୍ବରୁ ସେଇ ପେଣ୍ଟିଂ ଯେ କରିଥିଲେ ଏବଂ ତା ପରେ ମୁଣ୍ଡ ତାଙ୍କର ଖରପ ହୋଇ ଯାଇଥିଲ ଓ ପରେ ପରେ ଚକ୍ଷୁ ନଷ୍ଟ ମଧ୍ୟ ହୋଇଥିଲ । ବହୁତ ପରେ ମୁଁ ଯେତେବେଳେ **mental hospital**ରେ ଥିଲି ତାଙ୍କ ସହ ମୋର ଦେଖା ହୁଏ । ସେଠାଇ କେବିନରେ ତାଙ୍କ ସେବା କରିବା ପାଇଁ ମୁଁ ଠିକ୍ ହୋଇଥାଏ । ସେତିକିବେଳେ ମୋ ବ୍ୟବହାରରୁ ସେ ମନେ କରନ୍ତି ମୁଁ ତାଙ୍କର ସେଇ ସୁନ୍ଦରୀ ।"

ଟିକିଏ ହସି ଦେଇ ସେ ଚାଲିଗଲେ ।

ମୁଁ ଦ୍ୱାର ବନ୍ଦ କରୁ କରୁ ଭାବିଲି "ସତରେ ମୁଖର ସୌନ୍ଦର୍ଯ୍ୟ ବଡ କଥା ନୁହେଁ, ମନର ସୌନ୍ଦର୍ଯ୍ୟହିଁ ସବୁଠାରୁ ବଡ଼ ।"

ଶୁଣିଲି—

ସୁବ୍ରତ ହସି ହସି ଖୁବ୍ ଜୋର ପାଟିରେ କହୁଥିଲେ—

"ତମେ ଯା କହ ଏ ପେଣ୍ଟିଂ ତୁମ ତୁଳନାରେ କିଛି ନୁହେଁ । ମୁଁ ଥରେ କଣ ହଜାରେ ଥର କହିବି । ଯେତେ ଭଲ କରି କଳେବି ଯାକୁ ପର ମୁଁ ଗଢିଚି, ଆଉ ତମକୁ—ତମକୁ ଗଢିଚି ସେଇ, ଯେ ମୋରି ହାତରେ ଦେଇଚି ତୂଳୀ, ଆଉ ମନରେ ଦେଇଚି ଏତେ ସବୁ ରୂପର କଳ୍ପନା ।"



# ଚିତ୍ରପଟ

ଶୁଭକାନ୍ତ କପାଳ ଉପରକୁ ଝୁଲି ପଡ଼ିଥିବା କୁଞ୍ଚିତ କେଶରାଶିକୁ ଡାହାଣ ହାତର ଅଙ୍ଗୁଳି ଦେଇ ମୁଣ୍ଡ ଉପରକୁ ଉଠାଇ ଦେଲା । ହାତଟା କ୍ଳାନ୍ତ ମୁହଁ ଉପରେ ଥରେ ବୁଲାଇ ଆଣି ଖସାଇ ପକାଇବା ବେଳକୁ ନାକରୁ ଖସି ଆସିଥିଲା ତା'ର ଗୋଟାଏ ଦୀର୍ଘନିଃଶ୍ୱାସ; ବହୁତ ଦୀର୍ଘ–ହାତ ପାଇବ ନାହିଁ । ହାତ ବଢ଼ାଇଲେ ବି ପାଇବ ନାହିଁ । ସେ ବହୁତ ଲମ୍ବା, ବହୁତ ଉଚ୍ଚ–ଆଜି ଶୁଭକାନ୍ତ ଉପଲବ୍ଧି କରିଛି ।

ପକେଟରୁ ଚାବି ବାହାର କରି ଦ୍ୱାର ଖୋଲି ଭିତରକୁ ପଶିଲା ଶୁଭକାନ୍ତ । ଡାହାଣ ପଟ କାନ୍ଥ ଦରଜାରେ ଲାଇଟ୍ ସୁଇଚଟା ଟିପିଦେଇ ଆଲୁଅଟା ଜଳାଇ ଦେଲା । କୋଠରୀରେ ଆଲୋକର ପ୍ଳାବନ, କିନ୍ତୁ ମନ ତା'ର ଅନ୍ଧକାର ଭରା–ସେଇ ମୁଣ୍ଡ ଭାର ଟେବୁଲରେ ଲଦି ଦେଇ ସେ ଚେୟାରଟା ଉପରେ ବସି ପଡ଼ିଲା ।

କଣ ବା ଭାବିବ । ମୁଣ୍ଡ ଟେକିଲା ସେ । ସାମ୍ନା କାନ୍ଥ ଉପରେ ଲକ୍ଷ୍ୟ କଲା ସେଇ ବିରାଟ ପୁରୁଣା ଫଟୋଟା । ବାପା ତାର କେବେ ଏକ ଅଜଣା ଅଶୁଣା ଦରିଦ୍ର ଚିତ୍ରକରକୁ ସାହାଯ୍ୟ କରିବା ପାଇଁ କିଣି ଆଣିଥିଲେ ଏଇ ଅଏଲ୍ ପେଣ୍ଟିଂ ।

ଭଲ କରି ଲକ୍ଷ୍ୟ କରି ଗ୍ଲହିଁଲ ଶୁଭକାନ୍ତ ।

କଣ ଅଛି ଏମିତି ଏଇ ଫଟୋରେ !

ଭଲକରି ଆଲୁଅ ପଡ଼ିନି ଫଟୋଟି ଉପରେ; ଇଲେକଟ୍ରିକ୍ ଲଇଟ୍‌ଟାର ରିଫ୍ଲେକ୍‌ଟାରର ଛାଇରେ ରହି ଯାଇଚି । ଶୁଭକାନ୍ତ ଉଠିପଡି ଚେୟାରଟା ଟାଣିନେଇ ଫଟୋଟି କାନ୍ଥରୁ ଓହ୍ଲାଇ ଆଣିଲ । କେଜାଣି କେତେଦିନ ପରେ ଫଟୋଟି ମଣିଷ ହାତର ସ୍ପର୍ଶ ପାଇଲା ।

ବାପାଙ୍କ ମୃତ୍ୟୁ ପରେ ଶୁଭକାନ୍ତର ନଜର କେବେ ହେଲେ ପଡ଼ିନଥିଲା ଫଟୋଟି ଉପରେ । ଆଉ, ଏତେ ବଡ ଘରଟାରେ ଅଛି ବା କିଏ ? ଘ୍ଲକର କହ ପୂଜାରୀ କହ ସେଇ ଗୋଟିଏ ମଣିଷ ସଦାନନ୍ଦ । ସେଇ ଗୋଟିଏ ଲୋକ ବା କେତେ କଣ କରିବ ।

ଫଟୋର ପଛ ପାଖରେ କେତେ ଦିନର ବୁଢିଆଣୀ ଜାଲ ଉପରେ ଧୂଳି ଜମି ଏକ ସ୍ତର ଜମିଯାଇଥିଲା । ଆଉ ଚେୟାର ବାଡ଼ରୁ ଗଞ୍ଜିଟା ଟାଣିନେଇ ଫଟୋ ପଛପଟଟା ଓ କାଚ ସହ ଫ୍ରେମଟା ଭଲକରି ପୋଛି ଦେଇ ଫଟୋଟିକୁ ଟେବୁଲ ଉପରେ ଥିବା ବହିଗୁଡାକ ଉପରେ ଡେରି ଦେଇ ଫେରି ଆସି ଚେୟାରଟା ଉପରେ ବସିଲା ସେ ।

ଗ୍ଲହିଁ ଦେଖିଲ–

ଝଡ଼ ।

ମାଡ଼ି ଆସୁଚି କଳା ନିଘଞ୍ଚ ମେଘମାଳା ଗୋଟାଏ କୋଣରୁ । ଥାକ ଥାକ ହୋଇ କେତେ ଯେ ମେଘ ଘନୀଭୂତ ହୋଇ ଜମି ଯାଇଚି; ଆଉ ତା ସାଙ୍ଗକୁ ପବନ । ଗଛଲତା ସବୁ ନଇଁ ଯାଉଚି । ଏତେ ବଡ଼ ବଡ଼ ବିରାଟ ଗଛ ସବୁ ମୁଣ୍ଡ ନୁଆଇଁ ଦେଇଛନ୍ତି–ସତେ ଯେପରି ଉପୁଡ଼ି ପଡ଼ିବେ । ପତ୍ର ସବୁ ଝଡ଼ି ଆକାଶ ସାରା ଭର୍ତ୍ତି ହୋଇ ଯାଇଚି ।

ତା ସାଙ୍ଗକୁ ଧୂଳି–ବାଲୁ ମାଟି ମଧ୍ୟ ଉଠି ଯାଉଚି ଉପରକୁ । ଆଉ ଏ ପାଖରେ ପାଣି ଉପରେ ଉଠିଚି ବଡ ବଡ ଢେଉ । ଢେଉ ମାଡ଼ି ଆସୁଚି କୂଳଆଡ଼େ । ସେଇ ପାଣି ପାଖରେ ଜଣେ ଛିଡ଼ା ହୋଇଚି । ଲୁଗା ତାର ଅମାନିଆ ହୋଇ ପବନରେ ସତେ ଅବା ଉଡ଼ିଯିବ । ମୁଣ୍ଡର ବାଳ ଫର ଫର ହୋଇ ଉଡୁଚି ।

ଏଇ ଭୟଙ୍କର ଝଡ଼ - ଦାନବର ଲକ୍ଷ୍ୟ ଅବା ସେଇ ଜଣକ । ଶୁଭକାନ୍ତ ମନେ ମନେ ସହାନୁଭୂତି ସୂଚକ ହସଟିଏ ହସିଲା ।

ସତରେ ଏଇ ମଣିଷଟା କାହିଁକି ଆଜି ଏଇ ଝଡ଼ର ସମ୍ମୁଖୀନ ହୋଇଚି । ସେ ନିଜକୁ ଏଇ ମଣିଷଟି ସଙ୍ଗେ ତୁଳନା କରି ବସିଲା ।

ତା ଜୀବନରେ ବି ହଠାତ ଆସି ଦେଖା ଦେଇଚି ଏଇମିତି ଏକ ଝଡ଼ । ତା ନିଜ ଉପରେ ଆଜି ମାଡ଼ି ଆସିଚି ଏଇ ଝଡ଼-ଦାନବର ବିକଟାଳ ଭୟଙ୍କର ପ୍ରଭାବ । ସେ ପଥ ହରାଇଚି ।

କଳା ମେଘମାଳା ତଳେ ଧୂଳିର ଆସ୍ତରଣ–ତାରି ଭିତରେ ପଥହରା ହୋଇ ଛିଡା ହୋଇଚି ଶୁଭକାନ୍ତ । ସମ୍ମୁଖରେ ଜଳ ରାଶି–ପଥ କାହିଁ ? ତାର ଦିଗ୍‌ବିଜୟର ଯାତ୍ରା ପଥରେ ଏଇ ବାଧା ହଠାତ୍ ତାକୁ କିଂକର୍ତ୍ତ-ବ୍ୟବିମୂଢ଼ କରି ପକାଇଛି । କେତେ ବଡ଼ ଆଶା ନେଇ ସେ ତାର ଯାତ୍ରାରମ୍ଭ କରିନଥିଲା ସତେ !

ଦୂରନ୍ତ ସେଇ ମଧୁର ଆହ୍ୱାନ

ତାକୁ ଏଡଇ ନପାରି ସେ ହୋଇଥିଲା ଦିଗ୍‌ବିଜୟର ଯାତ୍ରୀ । ଲକ୍ଷ୍ୟ ତାର କେଉଁଠି ମିଳନ ଘଟିଚି ଧରିତ୍ରୀ ଆଉ ଆକାଶର–ପ୍ରକୃତି ଆଉ ପୁରୁଷର । କିନ୍ତୁ କାହିଁ–ସେ ପଥ ତାର ଆଜି ରୁଦ୍ଧ । ତାର ଆଜି ମଥା ପୋତି ଚୁପ ହୋଇ ରହିବା ଛଡା ଅନ୍ୟ ଉପାୟ ନାହିଁ ।

ଏଁ !

ସତରେ କଣ ଆଉ ପଥ ନାହିଁ ?

ସେ ଆଉ ଭବି ପାରିଲନି ।

ଉଠି ଆସି ଗ୍ଭହିଁଲ ସେ ଝରକା ଦେଇ ବାହାରକୁ । ସନ୍ଧ୍ୟା ମାଡ଼ି ଆସୁଚି—ଭୟଙ୍କର ଅନ୍ଧକାର ତାର ମାୟା ନେଇ ମାଡ଼ି ଆସୁଚି । ସବୁ ତାକୁ ଏକ ଚକ୍ରାନ୍ତ ପରି ମନେ ହେଲ, କେହି ତାକୁ ସାହାଯ୍ୟ କରିବାକୁ ନାହାନ୍ତି—ପ୍ରକୃତି ବି ଆଜି ତାର ପ୍ରତିକୂଳ । ସତରେ ସେ ହତୋତ୍ସାହ ହୋଇ ପଡ଼ିଲ ।

ଭବିଲ । ହଁ ଅତସୀ ନିଜେ ଯେତେବେଳେ ନୀରବ ରହିଲ ଆଉ କିଏ ବା ତାକୁ ସାହାଯ୍ୟ କରିବାକୁ ଆଗେଇ ଆସିବ ? କିଏ ଆଉ ତାର ଅଛି ; ଯାହାକୁ ନେଇ ଏଇ ଯାତ୍ରାର ଆୟୋଜନ ? ତାରି ପାଣି ପ୍ରାର୍ଥନା କରିବାକୁ ଯାଇ ଯେତେବେଳେ ସେ ଅପମାନିତ ହୋଇ ଫେରି ଆସେ ସେତେବେଳେ ଅତସୀ କାହିଁକି ଚିତ୍କାର କରି ତା ବାପାଙ୍କ ପାଖକୁ ଆଗେଇ ଆସି ପାରିଲନି ? ସେ ନୀରବ ରହି ପାରିଲ କିପରି ?

ଶୁଭକାନ୍ତ ଭଙ୍ଗି ପଡ଼ିଲ ।

ଫେରି ଆସି ପୁଣି ସେ ଚେୟାରରେ ବସି ପଡ଼ିଲ ।

ଆଖି ଆଗରେ ସେଇ କାଚ ବନ୍ଧାଇ ଫ୍ରେମ ଭିତରେ ଫଟୋ ଖଣ୍ଡିକ । ପୁଣି ସେଇ ମଣିଷଟାକୁ ଗ୍ଭହିଁଲ । କିନ୍ତୁ ହଠାତ୍ ଯେପରି ତାର ମନେ ହେଲ ମଣିଷଟାର କୌଣସି ଏକ ବୈଶିଷ୍ଟ୍ୟ ଅଛି । ସେ ଗ୍ଭହିଁଲ । ନା ତ; ମଣିଷଟା ତ ଝଡର ବେଗକୁ ଡରି ଯାଇ ମୁଣ୍ଡ ନୁଆଁଇ ଦେଇନି । ସେଇ ପାଣି ପାଖରେ ଗୋଡ ଫେରକା କରି ଦମ୍ଭର ସହ ଛିଡ଼ା ହୋଇଛି । ହାତଟାକୁ ଦମ୍ଭର ସହ ଛାତି ପାଖରେ ଭଙ୍ଗି ଗ୍ଭହିଁଚି ଦୂରକୁ । ମୁହଁରେ ତାର ଭଙ୍ଗି ପଡ଼ିବାର ଦୁର୍ବଳତା ନାହିଁ, ବରଂ ସେ ଯେପରି କାହାରି ଅନ୍ୱେଷଣରେ ଅଛି ।

ତାର ଦୃଷ୍ଟିପଥ ଅବଲମ୍ବନ କରି ଶୁଭକାନ୍ତ ଦେଖିଲା—ଦୂରକୁ । ସେ ଚାହିଁ ରହିଚି । ସେଇ ମେଘମାଳା ତଳେ ଠିକ ଜଳଧାର ଉପରେ ଝରି ପଡ଼ିଚି ଆଲୋକର ଏକ ଉତ୍ସ—ଆଶା ଆଉ ଆତ୍ମବଳର ଏକ ଉତ୍ସ ।

ଶୁଭକାନ୍ତ ଫଟୋଟି ଉପରୁ ମୁହଁ ଉଠାଇଲା । ତାକୁ କିଛି କରିବାକୁ ହେବ । ସେ ଏ ସମାଜର ବନ୍ଧନକୁ ମାନିବାକୁ ଚାହେଁନା । ଅତସୀ ଆଜି ତାକୁ ସାହାଯ୍ୟ କରିନି; ଏଥିପାଇଁ କଣ ସେ ନିଜେ ପଛେଇ ଯିବ ? ସେ ହଠାତ୍ ଉଠିପଡ଼ି ବାହାରକୁ ଯିବାକୁ ସ୍ଥିର କଲା । ହଁ ତାକୁହିଁ କରିବାକୁ ପଡ଼ିବ କିଛି—ସେ ମୃଣ୍ଡ ନୋଇଁ ଏଇ ଝଡ଼କୁ ଜୟ କରିବାକୁ ଦେବନି ।

ହଠାତ୍ ବାହାରେ କବାଟ ଧଡଧଡ ଶବ୍ଦ ହେଲା । ଶୁଭକାନ୍ତ ଆଗେଇ ଯାଇ ନିଜେ କବାଟଟା ଖୋଲି ଦେଲା; କିନ୍ତୁ ଯାହା ଦେଖିଲା ନିଜ ଆଖିକୁ ସେ ବିଶ୍ୱାସ କରି ପାରିଲା ନାହିଁ । ଅତସୀ ଛିଡ଼ା ହୋଇଥିଲା ଦ୍ୱାର ମୁହଁରେ । ହାତରେ ତାର ଗୋଟାଏ ସୁଟକେଶ୍ । ମୁହଁରୁ ତାର ଠିକ ସେଇ ଫଟୋରେ ଝରି ପଡ଼ିଥିବା ଆଲୋକର ଧାର ପରି ଝରି ପଡୁଥିଲା ଆନନ୍ଦର ଧାର ।



# ମନୀଷା + ମୁଁ—କମଳିନୀ

(ଡାକ୍ତର ମହାପାତ୍ରଙ୍କ ସହ ବେଶୀ ଦିନର ପରିଚୟ ନୁହେଁ । ତଥାପି ଏ କେତେ ଦିନ ମଧ୍ୟରେ ତାଙ୍କ ଓ ମୋ ମଧ୍ୟରେ କିପରି ଏକ ବନ୍ଧୁତ୍ୱ ଗାଢ ହୋଇ ଆସୁଥିଲା । ସେ ଦିନର ସକାଳୁ ସକାଳୁ ଉଠି ପଡ଼ି, ଶରୀରର ଦୁର୍ବଳତା ସତ୍ତ୍ୱେ ମୁଁ ସିଧା ଚାଲିଲି ତାଙ୍କରି ପାଖକୁ । ବିଗତ ରାତ୍ରୀର— )

ମୋ କଲମ ବନ୍ଦ ହୋଇଗଲା ।

ମନୀଷା ପାଖରେ ବସି ମୋ କଲମ ମୁନ ସୃଷ୍ଟି କରି ଯାଉଥିବା ପ୍ରତ୍ୟେକ ଅକ୍ଷରକୁ ପଢି ଯାଉଥିଲା । ହଠାତ୍ କଲମ ବନ୍ଦ୍ ହୋଇ ଯିବାରୁ ସେ ମୁହଁ ନ ଟେକି କହିଲା—

'କଣ ରହିଗଲା ଯେ' ।

ମୁଁ ନୀରବ ରହିଲି । ଭାବୁଥିଲି 'ଗୋଟାଏ ଜିଦରେ ଆରମ୍ଭ ସିନା କରିଦେଲି—ଆଉ ଲେଖିବି କି ନା ?'

ସେ ମୁହଁ ଟେକି ମୋ ଆଡ଼କୁ ଚାହିଁଲା । ମୋର ଚିନ୍ତାପୂର୍ଣ୍ଣ ମୁଖମଣ୍ଡଳକୁ ଦେଖି ସେ ନୀରବ ରହିଲା । ଭାବିଲା ଅବା ମୁଁ ଚିନ୍ତା କରୁଛି ଗଳ୍ପ ସମ୍ବନ୍ଧରେ କିଛି ।

'ନା, ମୋତେ ଆଜି ସବୁ ଜଣାଇବାକୁ ହେବ' ପୁଣି ଆଗେଇ ଗ୍ଭଲିଲି ।

( ... ...କୌଣସି ଚିନ୍ତା ଯେ ମୋ ମନ ମଧ୍ୟରେ ନଥିଲା ତା' ନୁହେଁ କିନ୍ତୁ ମୁଁ ଚେଷ୍ଟା କରି ତାକୁ ଦୂରେଇ ଦେଉଥିଲି । ତଥାପି ସବୁବେଳେ ହୃଦୟ ମଧ୍ୟରେ କିପରି ଏକ ଅସ୍ୱସ୍ତି ଅନୁଭବ କରୁଥିଲି ।

ଡାକ୍ତର ମୋତେ ଦେଖିବା କ୍ଷଣି ଆନ୍ତରିକତାର ସହ ପଗ୍ଭରିଲେ—

'ହ୍ୟାଲୋ ଇଞ୍ଜିନିଅର ସାହେବ ! ସକାଳୁ ସକାଳୁ ଆମ ଗୋଡ଼ ଧରିବାକୁ ଆସିଲ କୁଆଡେ ?'

ତାଙ୍କ ସହ ସବୁ ଦିନେ ଆମ ଦୁଇଜଣଙ୍କ ବୃତ୍ତି ନେଇ ଥଟ୍ଟା ଗ୍ଭଲେ ।

ମୁଁ ମୁହଁରେ ହସ ଫୁଟାଇ ଉତ୍ତର ଦେଲି—

'ହଁ ଭଗବାନ ବି ଦିନେ ଗଧ ପାଦ ଧରିଥିଲେ ।'

କାହିଁକି କେଜାଣି ଅଧିକ ଯୁକ୍ତିତର୍କ କରିବାକୁ ସେ ଦିନ ଜମା ଉତ୍ସାହ ବା ପ୍ରବୃତ୍ତି ନଥିଲା । ଚେୟାରଟା ଟାଣି ନେଇ ବସୁ ବସୁ ଭାବିଲି ମୁଁ ଯେପରି ଆସି ଭୁଲ କରିଛି । ଯେଉଁ ଏକ ଆଗ୍ରହ ନେଇ ସକାଳୁ ଘରୁ ବାହାରି ଆସିଥିଲି, ପହଞ୍ଚି ଦେଖେ ତା ନାହିଁ ବରଂ ଡାକ୍ତର ସାମ୍ନାରେ ମୋତେ କିପରି ଅଧିକ ପରିମାଣରେ ଅସ୍ୱସ୍ତି ଲାଗିଲା ।

ମୁଁ ବସି ପଡ଼ି ଝରକା ଦେଇ ବାହାରକୁ ଗ୍ଭହିଁଲି । ଝରକା ଆର ପାଖ ବାରଣ୍ଡାରେ ଷ୍ଟ୍ରେଚର୍ ଉପରେ ଧଳାକନା ଘୋଡାଇ ଟାଣି ନେଲେ । ଡାକ୍ତର ଜଣେ ରୋଗୀର ନାଡ଼ି ଉପରେ ଡାହାଣ ହାତ ରଖି ହାତଘଣ୍ଟାଟାକୁ ଗ୍ଭହୁଁଥିଲେ—ସେ ମଧ୍ୟ ଝରକା ଆଡ଼କୁ ମୁହଁ ଟେକି ଗ୍ଭହିଁଲେ ।

ମୁଁ ଝରକାରୁ ମୁହଁ ବୁଲାଇ ପ୍ରଶ୍ନବାଚୀ ଦୃଷ୍ଟି ଦେଇ ତାଙ୍କ ମୁହଁକୁ ଗ୍ଭହିଁଲି । ସେ ସମ୍ମତିସୂଚକ ମୁଣ୍ଡ ହଲାଇ ପୁଣି ହାତଘଣ୍ଟାକୁ ଗ୍ଭହିଁଲେ ।

ମୁଁ ଟିକିଏ ଅପେକ୍ଷା କରି ପଗ୍ଭରିଲି–

'କଣ ସକାଳୁ ସକାଳୁ ଜୀବହତ୍ୟା ?'

ପରିହାସର ଇଚ୍ଛା ନଥିଲେ ମଧ୍ୟ ସ୍ୱରରେ ଚପଳତା ରକ୍ଷା କରି ପଗ୍ଭରିଲି ।

'ନା ଭଇ ଏଇଟା ଗୋଟାଏ ଆତ୍ମହତ୍ୟା କେଶ୍ । ବର୍ତ୍ତମାନ ଆସି ପହଞ୍ଚୁଛି ।'

ଟିକିଏ ରହି ପୁଣି କହିଲେ–

'ଆସ ଡ଼ାକ୍ତର ମାଇନା କାମଟା ପ୍ରଥମେ ଶେଷ କରି ନିଏ ; କିଛିତ କାମ ନାହିଁ । ଆସ ଦେଖିବ ଆମ ହୀନ କାମ ।'

ମୁଁ ମଧ୍ୟ ଏପରି ଘରରେ ବସିବା ଅପେକ୍ଷା ଅନ୍ୟ କିଛି ପସନ୍ଦ କରୁଥିଲି । ତାଙ୍କ ଅନୁରୋଧରେ ବିନା ବାକ୍ୟବ୍ୟୟରେ ଉଠିଲି ।

ଯାଉ ଯାଉ ବାଟରେ ସେ କହିଲେ–

କାଲି ରାତିରେ ପୋଖରୀରେ କଳସୀ ବାନ୍ଧି ମରିଚି ଯୁବତୀଟି ।

ସତରେ ଆଜିକାଲି ଏଇ ଯୁବକ ଯୁବତୀ ସମସ୍ତେ ଏତେ ବେଶୀ ଭାବପ୍ରବଣ ! ତମେ ଦେଖିବ ଶତକରା–

ମୁଁ ତାଙ୍କ କଥା ଶୁଣି ନଥିଲି । ଭାବୁଥିଲି ସେଇ କମ୍ ବୟସର ଯୁବତୀଟିର କଥା । ବୁଝିବାକୁ ଚେଷ୍ଟା କରୁଥିଲି ତାର କଅଁଳ ନିଷ୍କପଟ ବ୍ୟଥିତ ହୃଦୟର କଥା । ଅବା କିଏ ଜାଣେ କେତେ ପାପର ବୋଝ ମୁଣ୍ଡରେ ନେଇ ସେ ଏଇ ହୀନ ମୃତ୍ୟୁ ବରଣ କରି ନେଇଛି ନିଜେ ନିଜେ ।

ମୋର ଘବାନ୍ତର ଦେଖି ଡାକ୍ତର କଥା ବନ୍ଦ କରି ମୋ ମୁହଁକୁ ଟିକିଏ ଘହିଁ ଦେଲେ ; ହସି ହସି ମୋ ପିଠିରେ ହାତ ବାଢ଼େଇ ଦେଇ କହିଲେ –

'କଣ ମନରେ ଲୁଆର କାହିଁକି ?'

ମୁଁ ତାଙ୍କ ପରିହାସ ବଦଳରେ ଅତି ଗମ୍ଭୀର ରହି କହିଲି –

'ସତରେ ମଣିଷ ହୃଦୟର ବ୍ୟଥା ବୁଝିବାକୁ କେତେଜଣ ଚେଷ୍ଟା କରନ୍ତି କହିଲ ?'

ମୋ କଥାରେ ବାଧା ଦେଇ ସେ କହି ଉଠିଲେ–

'ରଖ ହେ ତମ କବିପ୍ରାଣର ବକ୍ତୃତା ଗୁଡ଼ାକ ।'

ମୁଁ ଟିକିଏ ହସି ନୀରବ ରହିଲି ।

ପୋଷ୍ଟମର୍ଟମ୍ ଚେମ୍ବର ଭିତରକୁ ପଶିଯାଇ ପ୍ରଥମେ ମୋ ଆଖିରେ ପଡ଼ିଲା ସେଇ ଯୁବତୀଟିର ପାଦ ଦୁଇଟି । ଘୋଡାଇ ହୋଇଥିବା ଗ୍ବଦରରୁ ପାଦ ଦୁଇଟି ବାହାରକୁ ବାହାରି ପଡ଼ିଥିଲା । ହୁଏତ ମରିବା ସନ୍ଧ୍ୟାରେ ସେ ପିନ୍ଧିଛି ଅଳତା । ସୁନ୍ଦର ସୁଗଠିତ ପାଦରେ ଅଳତାର ପ୍ରଲେପ ତାର ଫୁଲି ଯାଇଥିବା ଦେହରେ ମଧ୍ୟ ସୁନ୍ଦର ଦେଖା ଯାଉଥିଲା ।

ମୋ ଚିନ୍ତାରେ ବାଧା ଦେଇ କେହି ଜଣେ ଶବ ଉପରୁ ଗ୍ବଦରଟି ଟାଣି ବାହାର କରିଦେଲା ।

ଚୁପ ହୋଇ କିଛି ସମୟ ମୁଁ ଘହିଁ ରହିଲି ମନୀଷାକୁ । ମୋ ଖାତା ଉପରେ ସେ ଝୁଙ୍କି ପଡ଼ିଥିଲା । ହୁଏତ ବର୍ତ୍ତମାନ ସେଇ ପୋଷ୍ଟମର୍ଟମ୍‌ଘର ଭିତରେ ନିଜେ ଘହିଁ ରହିଚି ସେଇ ଭଗ୍ୟହୀନାର ପାଦ ଦୁଇଟିକୁ ।

ମୋର ବହୁ ସମୟ ଚୁପ ରହିବାର ଦେଖି ସେ ମୁହଁ ଟେକି ଘହିଁଲା ଓ ଓଠରେ ହସ ଖେଳାଇ ଭ୍ରୂଲତା ଟେକି ମୋ ଦୃଷ୍ଟ ଖାତା ଉପରକୁ

ନେବାକୁ ଆଖିରେ ଠାରିଲ । ମୁଁ କିନ୍ତୁ ତଥାପି ଗମ୍ଭୀର ହୋଇ ତାରି ସୁନ୍ଦର ଓ ସରଳ ମୁଖମଣ୍ଡଳକୁ ଚାହିଁ ରହିଲି । ସେ ହୁଏତ ମୋ ଚାହିଁବାର ଗାମ୍ଭୀର୍ଯ୍ୟ ଅନୁଭବ କଲ, ଏଣୁ ବାତାବରଣକୁ ଲଘୁ କରିବା ଉଦ୍ଦେଶ୍ୟରେ ହସି କହିଲ—

'ମୁଁ ମରିନି ଏ ପର୍ଯ୍ୟନ୍ତ ।'

ମୁଁ କିଛି ନକହି ତଳକୁ ମୁହଁ କଲି ଓ ପୁଣି ଥରେ ଲେଖିଥିବା ଅଂଶର ଶେଷ ଧାଡ଼ିଟା ପଢ଼ିନେଲି ।

( 'ଶବ ଉପରୁ ଚାଦରଟା ଟାଣି ବାହାର କରିଦେଲ । )

କିନ୍ତୁ ମୁଁ ଦେଖିଲି କଅଣ ? ମୁଁ ଯାହା ଦେଖିଲି ବର୍ତ୍ତମାନ ସୁଦ୍ଧା ଚିନ୍ତା କଲବେଳକୁ ମୋ ଅନ୍ତରମ୍ମା ଥରି ଉଠୁଛି । ଭାବୁଥିଲି 'ତାକୁ' ମୁଁ ମନୀଷା ସହ ପରିଚୟ କରାଇବି କି ନା ? ମୋର ଭୟ ହେଉଥିଲ—ନା ଭୟ କଅଣ ? ଏତେ ଦୂର ଆସିଛି, କଥାରେ କହି ପାରିନି ବୋଲି ଲେଖିବାକୁ ବସି ଏତେ ଦୂର ଆଗେଇ ଆସିଛି, ଖାଲି ମନୀଷା ସହ ତାର ପରିଚୟ କରାଇବି ବୋଲି । ନା, ପୁଣି ଆରମ୍ଭ କଲି ।

(ତାର ମୁଖମଣ୍ଡଳକୁ ଚାହିଁ ସ୍ତବ୍ଧ ହୋଇଗଲି । ହୁଏତ ଡାକ୍ତର ସେତେବେଳକୁ ଯଦି ମୋ ମୁହଁ ଦେଖି ଥାଆନ୍ତେ ସେ ନିଶ୍ଚୟ କିଛି ଅନୁମାନ କରି ପାରି ଥାଆନ୍ତେ । କିନ୍ତୁ ମୋ ସୌଭାଗ୍ୟକୁ ସେ ନିଜ କାମରେ ବ୍ୟସ୍ତ ଥିଲେ । )

ଦେହଟା ଫୁଲି ଯାଇଥିଲେ ବି ମୁଁ ଠିକ୍ ଚିହ୍ନି ପାରିଥିଲି କମଳିନୀକୁ । ଗଳାରେ ସେଇ ଫୁଲ ବର୍ତ୍ତମାନ ସୁଦ୍ଧା ରହିଛି । ମୁଁ ଡାକ୍ତର ମୁହଁକୁ ଚାହିଁଲି – ସେଥିରେ ଉଦ୍‌ବେଗ ନାହିଁ, ଦୁଃଖ ବା ଅନ୍ୟ କିଛି ଭାବର ଆଭାସ ମୁଁ ପାଇଲିନି । ସେ ଯନ୍ତ୍ରପାତି ଧରି ଆଗେଇ ଆସିଲେ ।

ମୁଁ ଆଉ ଅପେକ୍ଷା କରି ପାରିଲିନି । ଛୁରୀ ଚଳାଇବା ପୂର୍ବରୁ ମୁଁ ବାହାରକୁ ବାହାରି ଆସିଲି । ବାହାରେ ଆସି ଭାବିଲି–ମନେ ମନେ ଉଚ୍ଚାରଣ କଲି ସେଇ ନାଁଟା ।

'କମଳିନୀ !'

ମୋ ହୃଦୟ ଧକ୍ ଧକ୍ କରିବାକୁ ଲାଗିଲା । ଭାବିଲି ବୋଧହୁଏ ମୂର୍ଚ୍ଛା ହୋଇଯିବି । ନା ; ତାରି ମୁହଁ ବାରମ୍ବାର ମୋ ଆଖି ଆଗରେ ନାଚି ଉଠିଲା । ତାର ଶାନ୍ତ ସୁନ୍ଦର କମଳମୁଖକୁ ପ୍ରଥମ ଦିନ ଦେଖି ମୁଁ ମୁଗ୍ଧ ହୋଇଥିଲି । ୨

ମୁଁ ଲେଖା ବନ୍ଦ କଲି । ମନୀଷା ଏଥର ସିଧା ମୋ ମୁହଁକୁ ଚାହିଁଥିଲା, ପଚାରିଲା–

'ତମେ ତାକୁ ଚିହ୍ନିଥିଲ ?'

ମୁଁ କିଛି ନ କହି ପୁଣି ଲେଖିବାକୁ ଆରମ୍ଭ କଲି–

(...ହଁ ମୁଁ ତାକୁ ଚିହ୍ନିଥିଲି । ଖୁବ ଭଲ କରି ଚିହ୍ନିଥିଲି । ସେଦିନ ସନ୍ଧ୍ୟାରେ ମୁଁ ପ୍ରଥମ କରି ସେଠାରେ ପହଞ୍ଚି କାମରେ ଯୋଗ ଦେଇଥିଲି । ଠିକ୍ ଦ୍ୱିତୀୟ ଦିନ ସକାଳ, ବାରନ୍ଦାରେ ବସିଚି ଖୁବ୍ ସକାଳଟାରୁ–ତାକୁ ପ୍ରଥମ କରି ଦେଖିଲି ।

ସଦ୍ୟ ଗାଧୋଇ ସେ ଆସିଛି । ଆଜାନୁଲମ୍ବିତ କେଶରାଶି ଅସଜଡ଼ା ହୋଇ ଝୁଲି ପଡ଼ିଛି । ଝରିପଡୁଛି ବିନ୍ଦୁ ବିନ୍ଦୁ ଜଳଧାର । ସକାଳିଆ ସୂର୍ଯ୍ୟର କଅଁଳିଆ କିରଣରେ ପୁଷ୍ପସୌରଭ ମଧ୍ୟରେ ସେ ଏକ 'ପରି' ପରି ଗୁଣୁ ଗୁଣୁ କରି ଗୀତ ଗାଇ ଫୁଲ ତୋଳିବାରେ ଲାଗିଥିଲା । ମୋ ପ୍ରତି ତାର ଖିଆଲ ନାହିଁ । ମୁଁ ବି କେତେ ସମୟ ଯେ ସେ ସୌନ୍ଦର୍ଯ୍ୟ ଉପଭୋଗ କରୁଥିଲି ମନେ ନାହିଁ ।

ଫୁଲଟିଏ ତଳେ ପଡ଼ିଗଲା । ନଇଁପଡ଼ି ଗୋଟାଇବାକୁ ଯାଇ ଲୁଗା ତାର ଖସି ପଡ଼ିଲା–ସଜାଡ଼ୁ ସଜାଡ଼ୁ ତାର ଆଖି ପଡ଼ିଗଲା ମୋ ଉପରେ । ତାର ନିତି ଦିନିଆ ପରିବେଶ ମଧ୍ୟରେ ହଠାତ୍ ନୂଆ ଲୋକଟିଏ ଦେଖି ଆଶ୍ଚର୍ଯ୍ୟ ହୋଇଥିବ । ଇଙ୍ଗିତ ହୋଇ ଚଞ୍ଚଳ ପଦକ୍ଷେପରେ ସେଇ କ୍ୱାଟର୍ସର କମ୍ପାଉଣ୍ଡ ଭିତରେ ଥିବା ଚୌକିଦାର ଘରକୁ ଆଗେଇ ଗଲା । ସେଠାରେ ତା ସହ କଥାବାର୍ତ୍ତା ହେଉଁ ହେଉଁ ମୋ ଆଡକୁ ଚାହିଁ ଚାହିଁ ଚାଲିଗଲା ।

ତା'ପରେ ପ୍ରତ୍ୟେକ ଦିନ ସେ ଆସେ । ମୁଁ କିନ୍ତୁ ତାର ଅବସ୍ଥିତି ବା ଆଗମନ ପ୍ରସ୍ଥାନ ଉପରେ ଜମା ଗୁରୁତ୍ୱ ନଦେଇ ତା ଅଜାଣତରେ ତାକୁ ଦେଖେ । ଦିନେ ସନ୍ଧ୍ୟାବେଳେ ବୁଲି ଫେରୁଛି–ଗେଟ୍ ପାଖରେ ଭିତରେ ବର୍ଗଲୁର ଚୌକିଦାରର କଥା ଶୁଣାଗଲା ।

'କିଛିତ ଖାଉ ନାହାନ୍ତି, ଏଠି ସେଠି ଟିକିଏ ହାତ ମାରି ଉଠି ଯାଉଅଛନ୍ତି ।'

ଟିକିଏ ରହି ପୁଣି ଆରମ୍ଭ କଲା–

'ମୁଁ କଣ ରାନ୍ଧି ଜାଣିଚି । କୁଆଡୁ ବା 'ଜାଣିବି କହିଲ ମା ।'

ମୁଁ ନ ଜାଣିଲା ପରି ଗେଟ୍ ଖୋଲି ଭିତରକୁ ଆଗେଇ ଗଲି ।

ତା ପରଠାରୁ ଦେଖିଲି କମଳିନୀ ବହୁବାର 'ଏକ୍କା' ଚୌକିଦାର (ଯିଏକି ମୋ ପାଇଁ ରୋଷାଇ କରୁଥିଲା) ସଙ୍ଗରେ ରୋଷାଇ ଘରେ । କେତେ ଥର ମଧ୍ୟ ତା ଘରୁ ତରକାରୀ ଆସିଛି । ମୁଁ ଜାଣି ମଧ୍ୟ ନୀରବ ଥାଏ ।

ତା' ପରେ ହଠାତ୍ ଦିନେ ମୋର ଜ୍ୱର ହେଲା–ରାତିରୁ । ପରଦିନ ଦ୍ୱିପ୍ରହର ବେଳକୁ ଜ୍ୱର ବଢିଲା । 'ଏକ୍କା' ବିଚରା ଭୀଷଣ ବ୍ୟସ୍ତ–ମୋତେ ଛାଡ଼ି କୁଆଡେ ଯାଇପାରୁ ନଥାଏ । ସନ୍ଧ୍ୟା ବେଳକୁ ଜ୍ୱର ସାମାନ୍ୟ କମିଲା ପରି ମନେ ହେଉଥାଏ । ମୁଁ ଆଖି ବୁଜି ପଡ଼ିଥାଏ । ହଠାତ୍

ଆସି ପହଞ୍ଚିଲା କମଳିନୀ – ସନ୍ଧ୍ୟାର ଅନ୍ଧକାରରେ ଭଲ କରି ଦେଖି ପାରିଲିନି ତାକୁ । ଟିକିଏ ଚଢ଼ା ଗଳାରେ କହିଲା –

କାଲିଠୁ ଜ୍ୱର ହେଲାଣି, ମୋତେ ଟିକିଏ ଖବର ଦେଇ ପାରିଲୁନି ? ସକାଳୁ ମୁଁ ବଗିଚା ଆସିଥିଲି କାହିଁ କିଛିତ କହିନୁ ?'

ଏକୁା ଚୁପ ରହିଲା ।

'ବିଦେଶ ଜାଗା, ଦେହ ଖରାପ ହେଲେ ପାଖରେ କେହି ଗୋଟାଏ ନଥିଲେ କିପରି ଲାଗେ ?'

ତା'ପରେ ସେ ଆରମ୍ଭ କଲା ତାର ସେବା । ଗୋଟିଏ ଶିକ୍ଷିତା ନର୍ସ ମଧ୍ୟ ଏମିତି କରି ପାରିବନି । ପୂର୍ଣ୍ଣ ଚବିଶ୍ ଘଣ୍ଟା ପରେ ମୁଁ ସାମାନ୍ୟ ସୁସ୍ଥ ବୋଧ କଲି । ମୋର ଶରୀରରେ ୧୦୪ ଡ଼ିଗ୍ରୀ ଉତ୍ତାପ ଥିବା ଅବସ୍ଥାରେ ମୋର ଅବଚେତନ ମନ ଏକ ସ୍ନେହୀ ହାତର ସ୍ପର୍ଶ ପାଇଥିଲା ଓ ଅନେକଟା ସେଇଥିପାଇଁ ସୁସ୍ଥ ହୋଇ ଉଠିଥିଲା ହୁଏତ । ସେ ମୋର ଯେ ପରିଚିତ ନୁହେଁ ଏଥିପାଇଁ ମୁଁ ତାକୁ ଦୂରେଇ ଦେଇ ପାରି ନଥିଲି ।

ସେ ମୁଣ୍ଡ ପାଖରେ ଗୋଟିଏ ଚେୟାର ନେଇ ବସିଥିଲା । ମୁଁ ତାର ନାମ ଧରି ଡାକିଲି–

'କମଳିନୀ' ।

'କଣ କୁହନ୍ତୁ' ।

ମୁଁ କିଛି ସମୟ ନୀରବ ରହିଲି । ପୁଣି କହିଲି–

'ଦେଖ, ତମର ଏମିତି ମୋ ପାଖରେ ରାତି କଟାଇବା କଣ ବାହାର ଆଖିରେ ଭଲ ଦେଖା ଯାଉଛି ?'.

ସେ ନୀରବ ରହିଲା । ମୁଁ ପୁଣି କହିଲି–

'ନା ; ତମେ ଆସନି' ।

ଏତକ କହିସାରି ହୁଏତ ମୁଁ ନିଜକୁ ଦୋଷୀ ମନେ କଲି ।

କଣ ବା ଦୋଷ ଝିଅଟିର ! ଗଜରକ୍ଷିତାର ଝିଅ ସେ । ରଜାଙ୍କ ଦୟାରୁ କିଛି ଜମି ଭଗଗ୍ରଷରେ ଦେଇ ବର୍ତ୍ତମାନ ମା ଝିଅ ଚଳନ୍ତି । ସେଥିପାଇଁ ଗାଁ ସାର ସମସ୍ତଙ୍କ ଘୃଣାର ପାତ୍ର ହୋଇ ସେ ଛୁଆଟି ଦିନରୁ ବଢି ଆସିଛି । ମୋ ମନରେ ଯଥେଷ୍ଟ ସହାନୁଭୂତି ଥିଲା, ଏବଂ ଏଇ କଥାଗୁଡାକ କହି ତା ମନରେ କଷ୍ଟ ଦେଇଥିବି ଭବି ମୋର ଦୟା ହେଲେ ମଧ୍ୟ ମୁଁ ଆଖି ବୁଜି ନୀରବ ରହିଲି ।

ସେ କେତେବେଳେ ଉଠି ଚାଲି ଯାଇଥିଲା ମୁଁ ଜାଣେନି । ରାତି ଗଲା । ସକାଳୁ ତାକୁ ଟିକିଏ ଦେଖିବି ବୋଲି ଦୁର୍ବଳ ଶରୀର ନେଇ ମୁଁ ବାରନ୍ଦାରେ ଆସି ବସିଥିଲି – କିନ୍ତୁ ସେ ଆସି ନଥିଲା ।

ସେ ଦିନ ବି ଗଲା ।

ସନ୍ଧ୍ୟାବେଳକୁ ମୁଁ ମନେ ମନେ ଭୀଷଣ କଷ୍ଟ ପାଇଲି । ନିଜକୁ ଦୋଷୀ ମନେ କଲି । ହୁଏତ କମଳିନୀ ଯାଇ ମୁହଁ ଶୁଖାଇ କାନ୍ଦି କାନ୍ଦି ବିଛଣାରେ ଲେଟି ପଡ଼ିଥିବ । ମା' ତାର ଆଦରର ଝିଅ ଆଖିରେ ଲୁହ ଦେଖି କେତେ କଣ ପଗ୍ଭରିଥିବେ—କମଳିନୀ କି ଉତ୍ତର ଦେବ ତାର ?

ମୁଁ ନିହାତି ବ୍ୟସ୍ତ ହୋଇପଡ଼ିଲି ।

ସନ୍ଧ୍ୟାବେଳକୁ ଏକ୍ୱାକୁ ପଠାଇଲି ତାକୁ ଡାକିବା ପାଇଁ ।

'ଯାଉଛି' ବୋଲି ଖବର ଦେଇ ରାତି ସୁଦ୍ଧା ସେ ଆଉ ଆସିଲା ନାହିଁ । ମୁଁ ଆହତ ହେଲେହେଁ ତା ମନର ଅବସ୍ଥାକୁ ଭବି ନୀରବ ରହିଲି ।

ପରଦିନ ସକାଳୁ ମୋ ନିଦ ଭାଙ୍ଗିବା ବେଳକୁ ମଶାରି ଭିତରୁ ଗ୍ଭହିଁ ଦେଖେ ସେ ଛିଡା ହୋଇଛି ମଶାରି ଆରପାଖେ ; ଆଉ ଗ୍ଭହିଁ ରହିଛି ମୋ

ମୁହଁକୁ ନିର୍ଣିମେଷ ନୟନରେ । ମୁଁ ଟିକିଏ ଅପ୍ରସ୍ତୁତ ହୋଇ ମଣ୍ଡାରି ଟେକି ବାହାରକୁ ବାହାରି ପଡ଼ିଲି ।

ଗ୍ରହିଁ ଦେଖିଲି । ତା ଆଖିରେ ଲୁହ । ମୁଁ କିଂକର୍ତ୍ତବ୍ୟବିମୂଢ଼ ହୋଇ ସେମିତି ଗ୍ରହିଁ ରହିଲି ତା ମୁହଁକୁ ।

ହଠାତ୍ ସେ କାନ୍ଦିବା ସ୍ୱରରେ ଆରମ୍ଭ କଲା –

'ରକ୍ଷିତାର ସନ୍ତାନ ମୁଁ । ସେଥିପାଇଁ ଯୌବନର ପ୍ରାରମ୍ଭରୁ ଶୁଣି ଆସିଚି ନାନା କୁତ୍ସା । ସେଥିପାଇଁ କେବେ ମୋର ଭୟ ନାହିଁ । ଗଜବଂଶର ମଦ୍ୟପ ବୃଦ୍ଧ ଠାରୁ ଆରମ୍ଭ କରି କିଶୋର ପର୍ଯ୍ୟନ୍ତ ମୋର ସଙ୍ଗ ସୁଖ ଆଶା କରି ନାନା ପ୍ରକାର ପ୍ରଲୋଭନ, ଦରକାର ପଡ଼ିଲେ ଧମକ ଓ ଭୟ ଦେଖାଇ ଆସିଛନ୍ତି । କିନ୍ତୁ ମୋର ମନରେ ବଳ ଥିଲା ଖୁବ୍ ବେଶୀ ।'

ଏତେକ କହି ସେ ଆହୁରି କାନ୍ଦି ଉଠିଲା । ଟିକିଏ କୋହ ସମ୍ଭାଳି ପୁଣି ଆରମ୍ଭ କଲା –

'କିନ୍ତୁ ଆଜି ମୋର ବଳ ଭାଙ୍ଗି ଯାଉଛି ।'

'ମୁଁ ହୁଏତ ବେଶ୍ୟାର ସନ୍ତାନ, କୁଳଟା, କିନ୍ତୁ ସେଥିପାଇଁ ତମକୁ କାହିଁକି କୁତ୍ସାର ସମ୍ମୁଖୀନ ହେବାକୁ ଦେବି । ମୋତେ ତୁମେ କ୍ଷମା କର ।'

କହୁ କହୁ ସେ ମୋ ପାଦରେ ମୁଣ୍ଡ ରଖିଲା ।

ମୁଁ ଏଥିପାଇଁ ଆଦୌ ପ୍ରସ୍ତୁତ ନଥିଲି । ନଇଁ ପଡ଼ି ତାର ବାହୁରେ ହାତ ଦେଇ ତାକୁ ଉଠାଇ ଆଣିଲି । ମୋ ଦେହ ସହ ଦେହ ଲଗାଇ ସେ ଉଠି ଛିଡାହେଲା । ଆଖିରୁ ତାର ଝରି ଯାଉଥିଲା ଧାର ଧାର ଲୁହ । ମୁଁ ମୋ ହାତରେ ତା ଲୁହ ପୋଛିବାକୁ ବଢାଇବା ବେଳକୁ ସେ ମୋ ଛାତି ଭିତରେ ତା ମୁହଁକୁ ଗ୍ରପିଧରି ମୋତେ ଗାଢ ପାଶରେ ଧରି ରଖିଲା । ମୁଁ କିନ୍ତୁ ତାକୁ ନା ଧରି ରଖି ପାରିଲି, ନା ଠେଲି ଦେଇ ପାରିଲି ।

କିଛି ସମୟ ସେ ସେମିତି କାନ୍ଦି କାନ୍ଦି ଯେତେବେଳେ କୋହ ତାର ବନ୍ଦ ହେଲ ମୁହଁ ଟେକି ମୋତେ ଗ୍ଚହିଁଲ ।

ମୁଁ ଜଡ ପାଲଟି ଯାଇଥିଲି ।

ଲୁହଭିଜା ଆଖିରେ ସେ ଟିକିଏ ହସି ମୋତେ ଗୋଟାଏ ପ୍ରଣାମ କରି ଗ୍ଚଲିଗଲ ।

ମୁଁ ସେମିତି ଜଡ଼ ହୋଇ ବସିଥିଲି ବହୁ ସମୟ ପର୍ଯ୍ୟନ୍ତ ।

× × ×

ସନ୍ଧ୍ୟାବେଳେ ପୁଣି ଆସିଲ ସେ । ଜ୍ୱର ପରେ ଛାତିରେ କଫ ଏଣୁ ଛାତିରେ ବଥା ଅନୁଭବ କରି ଶୋଇ ରହିଥିଲି—ସେ ଆଗେଇ ଆସି ମୋରି ପାଖ ବିଛଣା ଧାରରେ ବସି ପଡ଼ିଲ ଓ ଟେବୁଲ ଉପରୁ ଭିକ୍‌ସଟା ନେଇ ମାଲିସ କରିବାକୁ ଆରମ୍ଭ କଲ ।

ମୁଁ ଶୋଇ ପଡ଼ିଥିଲି ଧୀରେ ଧୀରେ ।

ବହୁ ସମୟ ପରେ ସେ ଉଠାଇ ମୋତେ ଖାଇବାକୁ ଦେଲ । ନିଜେ ବସି ବସି ମନ ଦେଇ ରନ୍ଧିଚି । କେତେ ଦିନ ରୋଗ ଭୋଗିବା ପରେ ଖାଦ୍ୟ ବେଶ୍ ତୃପ୍ତିକର ଲଗିଲ ।

ଖାଇ ସାରି ମୁଁ ନୀରବରେ ବିଛଣାରେ ଶୋଇଛି । ଟିକିଏ ଟିକିଏ ବର୍ଷା ଆରମ୍ଭ ହୋଇଥାଏ । ସେ ବିଛଣା ଧାରରେ ଆସି ବସିଲ—ଗୋଟାଏ କରଚୂଲିରେ ନିଆଁ ରଖି କନା ପୁଡ଼ିଆଟିଏ କରି ମୋ ଛାତି ଓ ବେକରେ ସେକ ଦେବା ଆରମ୍ଭ କଲ ।

ସେତିକିବେଳେ ମୁଁ ଭଲ କରି ତାକୁ ଲକ୍ଷ୍ୟ କଲି—ଆଜି ଯେପରି ସେ ଆସିଛି ଟିକିଏ ଅଧିକ ପରିମାଣରେ ପରିପାଟୀ ହୋଇ । ଗଭରେ ତାର ଆଜି ଫୁଲ—ଯାହା ସେ କେବେ ଲଗାଏନି । କାନରେ, ବେକରେ,

ମୁଣ୍ଡ ପିଣ୍ଡିରେ ମଧ୍ୟ ଗହଣା ଦେଖି ମୁଁ ଟିକିଏ ଅବାକ୍ ହେଲି । ସେ ମୋର ଭାବ ବୁଝିପାରି ମୁହଁରେ ହସ ରଖି କହିଲା–

'ଏମିତି ପିନ୍ଧି ଦେଇଛି । ଗଜବଂଶ ଦାଉରୁ ତ କେବେ ଟିକିଏ ଭଲ କରି ମୁଣ୍ଡ କୁଣ୍ଡାଇବାକୁ ଡର ଲାଗେ । ତା'ପରେ (ଟିକିଏ ରହି) କେବେ ହୁଏତ ତାଙ୍କରି ପଶୁତ୍ୱ ତଳେ ମୋର ନାରୀତ୍ୱ ଆଉ ତା' ସହ ଜୀବନଟା ମଧ୍ୟ ଲୋପ ହୋଇଯିବ ଏବଂ ବର୍ତ୍ତମାନ ଯାହା ପରିସ୍ଥିତି–

ସେ ଚୁପ ରହିଲା ।

ମୁଁ ସାମାନ୍ୟ ବ୍ୟଗ୍ରତାର ଭାବ ଦେଖାଇ କହିଲି–

'ମାନେ' ?

'ବର୍ତ୍ତମାନ ଯେପରି ଭାବରେ ମୋ ପିଛା ଧରିଛନ୍ତି–ସେଦିନ ଆଉ ବେଶୀ ଡେରି ନାହିଁ ।'

ତାର ଦୁଃଖ କାହାଣୀ ଶୁଣିବାକୁ ମୋତେ ଭଲ ଲାଗୁ ନଥିଲେ ବି ଘରକୁ ଯିବାକୁ ମଧ୍ୟ କହି ପାରି ନଥିଲି ।

ମୁଁ ଆଖି ବୁଜିଲି ।

ଧୀରେ ଧୀରେ ତାର ଶରୀରର ଚାପ ମୋ ଛାତି ଉପରେ ବୃଦ୍ଧି ପାଉଥିଲା ।

ପୁଣି ସେ ଆରମ୍ଭ କଲା–ପ୍ରାୟ ଫୁସ୍ ଫୁସ୍ ସ୍ୱରରେ ।

'ନାରୀ ଜୀବନର ପରିତୃପ୍ତି ସେଇ ଗୋଟିଏ ପଦତଳେ । ଜୀବନରେ ବିବାହର ଆଶା ମୁଁ ରଖିନି–ମୁଁ ରକ୍ଷିତାର ଝିଅ ହେଲେବି ମୁଁ ଜାଣେ ମା ମୋର ପତିତା ନୁହେଁ–ତାର ସେଇ ଗୋଟିଏ ଦେବତା ।'

ତାର ଗରମ ନିଃଶ୍ୱାସ ମୋର ବେକ ଓ ମୁହଁରେ ଲଗୁଥିଲା । ପୁଣି ସେ ଆରମ୍ଭ କଲା–ଠିକ୍ ଆଗପରି–

'ମୁଁ ନାରୀ, ମୋତେ ସେଇ ନାରୀ ଧର୍ମ ରକ୍ଷା କରିବାକୁ ଦିଅ । (ଟିକିଏ ରହି) ମୁଁ ତମକୁ ଭଲ ପାଉଛି; ମୋତେ ତମେ ନାରୀର ସମ୍ମାନ ଦିଅ ।'

ତାର ଗରମ ନିଃଶ୍ୱାସ ଖୁବ୍ ଜୋରରେ ଆସି ମୋ ମୁହଁରେ ଲଗୁଥିଲା । ଗରମ ସେକ ପରେ ତାର ଶରୀରର ଉତ୍ତାପ ହୁଏତ ମୋତେ ଉଷ୍ମ କରିଥିଲା । ସେଇ ଅନ୍ଧକାର ମଧ୍ୟରେ ଦୁର୍ବଳ ଶରୀରର ଉତ୍ତାପକୁ କେତେ ସମୟ ବା ମନର ବଳ ଅଟକାଇ ରଖିପାରିବ । ମୁଁ ମନର ବଳ ହରଇ ବସିଲି । ଅନ୍ଧକାର ମଧ୍ୟରେ ଅନ୍ଧକାରର ମାୟା ଛଡା ମୁଁ ଆଉ କିଛି ଦେଖି ପାରୁ ନଥିଲି ।

ବହୁ ସମୟ ପରେ–ଅବଶ ଆଖିରେ ସେ ମୋ ଶଯ୍ୟାଧାରରୁ ଉଠିଯାଇ ଆଲୁଅ ଲଗାଇଲା ।

ମୁଁ ଆଖି ଖୋଲି ତକିଆକୁ ଆଉଜି ବସିଲି । ମନରେ ସାମାନ୍ୟ ଶଙ୍କା ସହ ଆତ୍ମଶ୍ଳାଘା ମଧ୍ୟ ଅନୁଭବ କଲି । ମୁଁ ତା' ମୁହଁକୁ ଚାହିଁଲି । ତାର ମୁଖମଣ୍ଡଳ ହଠାତ୍ ମୋତେ ଖୁବ୍ ଉଜ୍ଜ୍ୱଳ ଜଣାଗଲା । ସେ ମୋ ମୁଣ୍ଡ ପାଖକୁ ଆସି ମୋ ମୁଣ୍ଡକୁ ତା ଛାତି ମଧ୍ୟରେ ଧରି ବାଳଗୁଡାକୁ ସଜାଡ଼ି ମୋ ମୁହଁକୁ ଚାହିଁ ରହିଲା । ମୁହଁରେ ତାର ତୃପ୍ତିର ହସ ।

ପୁଣି ବୁଲି ଆସି ଗୋଟାଏ କାଗଜ ପୁଡ଼ିଆରେ ଆଣିଥିବା ଟିକିଏ ସିନ୍ଦୂର ମୋ ହାତରେ ନେଇ ନିଜ ସିନ୍ଥିରେ ଲଗାଇଲା । ତା'ପରେ ପାଦ ପାଖକୁ ଆସି ପାଦ ଧରି ପ୍ରଣାମ କଲା– ତଳେ ମୁଣ୍ଡଲଗାଇ । ପାଦ ଦୁଇଟିକୁ ଛାତିରେ ଜାକି ଧରି କେତେ ସମୟ ମୁଣ୍ଡ ରଖି ଶୋଇ ରହିଲା ।

ପାଦ ଉପରେ ତାର ଲୁହଧାର ଅନୁଭବ କରୁଥିଲେ ହେଁ ମୁଁ ବୋକା ପରି ଚାହିଁ ରହିବା ଛଡା ଆଉ କିଛି କରି ପାରି ନଥିଲି ।

ମୁଣ୍ଡ ଟେକିଲି କଲମ ବନ୍ଦ କରି ।

ସେତେବେଳକୁ ମନୀଷା ଆଉ ପଢୁ ନଥିଲା । ସିଧା ହୋଇ ବସି ମୋରି ମୁହଁକୁ ଚାହିଁଥିଲା । ମୁଁ ଯେଉଁ ଅଂଶକୁ ଭୟ କରୁଥିଲି ତାହାତ ପ୍ରକାଶ ପାଇ ସାରିଥିଲା । ଏଣୁ ଆଉ ଲଜ୍ଜିତ ନ ହୋଇ ପୁଣି ଆରମ୍ଭ କଲି ।

( ... ତା'ପରେ ହଠାତ୍ ସେ ଉଠି ଦ୍ରୁତ ପଦରେ ବାହାରକୁ ଚାଲିଗଲା । ବର୍ଷାର ବେଗ କମି ନଥିଲା ବରଂ ବଢିଥିଲା ଆଗ ଅପେକ୍ଷା । କିନ୍ତୁ ମୁଁ ତାକୁ ଅଟକାଇ ପାରି ନଥିଲି । ମୋ ମୁହଁରୁ ପଦେ ହେଲେ କଥା ବାହାରିଲାନି । ତାକୁ ପଛରୁ ଡାକି ମଧ୍ୟ ପାରିଲିନି ।

କେତୋଟି ଘଣ୍ଟାର ପରେ ।

ସକାଳୁ ଉଠି ଆସି ଦେଖେ— ସିଏ ମରି ଯାଇଛି, କାଲିକାର ସେଇ କମଳିନୀ ମଉଳି ଯାଇଛି ।

ଡାକ୍ତର ବାହାରକୁ ଆସିଲେ । ମୋତେ ହଲାଇ ଦେଇ କହିଲେ–

'ଖବରଟା ଶୁଣିଲ ?'

ମୁଁ ତାଙ୍କ ମୁହଁକୁ ଚାହିଁଲି ।

'ଝି ଟି କାଲି ଚିଠି ଲେଖି ଆତ୍ମହତ୍ୟା କରିଛି । ଏଠାକାର ରାଜବଂଶର ଅସତ୍ ବ୍ୟବହାର ଭୟରେ ସେ ଆତ୍ମହତ୍ୟା କରିଛି— କାହାରିକୁ ଦୋଷ ଦେଇନି ।'

କିନ୍ତୁ ତା ପୂର୍ବରୁ ସେ ଯେ ଲୁଣ୍ଠିତା –

ଏହା କହି ସେ ରାନ୍ଧୁଆ ଘରକୁ ଗଲେ ।

କିଛି ସମୟ ପରେ ପୋଲିସ ଆସିଲେ— ସବୁ ରିପୋର୍ଟ ନେଇ ହସିଦେଲେ ।

'ହଁ ଆଜ୍ଞା ଏମିତି ହୁଏ ।' )

ମୁଁ ଲେଖା ବନ୍ଦ କରି ମନୀଷା ମୁହଁକୁ ଚାହିଁଁ । ତା ଆଖିରେ ଲୁହ ।

ସହାନୁଭୂତି ?

ଦୁଃଖ ?



# ପରିଚିତାର ପରିଚୟ

ନୂଆ ହୋଇ ଜଏନ୍ କରିଥିଲି ।

ପାଞ୍ଚ ବର୍ଷ ସରକାରୀ ଚାକିରି ପରେ କାହିଁକି କେଜାଣି ଆଉ ସେଇ ପୁରୁଣା ପରିବେଶ ଭଲ ଲାଗିଲା ନାହିଁ । ସେଇ ଏକା ପ୍ରଶ୍ନ, ଏକା ଉତ୍ତର, ଏକା କାମ । ନୂତନତ୍ୱର ଅନ୍ୱେଷଣରେ ଆସି ଏଇଠି ମାତୃଭୂମି ଛାଡ଼ି ବିହାରର ଏକ ଛୋଟ କୋଇଲା ଖଣି ଅଞ୍ଚଳରେ ଜଏନ୍ କଲି – ଭଲ ମୋଟା ଦରମା । ତା ସଙ୍ଗେ ନୂଆ ହୋଇ ଉଠୁଥିବା ଛୋଟ ସହରଟିର ସୃଷ୍ଟିକର୍ତ୍ତା କହିଲେ ଚଳେ । ସର୍କାରି କାମର ନିୟମବନ୍ଧା ଫାଇଲ ନାହିଁ– ଖାଲି କାମ ।

ଡ୍ରଇଂ– ଡ଼ିଜାଇନ୍ ଆଉ ଓ୍ୟାର୍କ ସାଇଟ୍ ନେଇ କେତେଟା ଦିନ ସବୁ କାମ ସହ ପରିଚିତ ହେବା ପରେ ପ୍ରଥମ ଫାଇଲ ଦେଖିବାକୁ ପାଇଲି 'ଘର ବିଲଗ' । ମୋ ନିଜ ରହିବା ଘରର ଏଲଟମେଣ୍ଟ କିଏ କରିଥିଲା ମୁଁ ଜାଣେନା । ସିଧା ଷ୍ଟେସନରୁ ଆସି ସେଇଠି ଓହ୍ଲାଇଥିଲି ।

ଶୁଣିଲି ।

ମୋ ପୂର୍ବରୁ ଯେ ଥିଲେ ହଠାତ୍ ସେ ଏକ ଖଣି ଦୁର୍ଘଟଣାରେ ପଙ୍ଗୁ ହୋଇ ଏବେ ଡାକ୍ତରଖାନାରେ । ତାଙ୍କୁ କ୍ଷତିପୂରଣ ଦେବା ନେଇ କମ୍ପାନି ସହ ଗଣ୍ଡଗୋଳ ସୃଷ୍ଟି ହୋଇଥିଲା । ସେ କୁଆଡେ ବନ୍ଧୁମାନଙ୍କୁ ନେଇ

ଖଣି ଭିତରକୁ ବୁଲି ଯାଇଥିଲେ ଏବଂ ସେତିକିବେଳେ ଏଇ ଦୁର୍ଘଟଣା । ଏଇଥି ପାଇଁ ବର୍ତ୍ତମାନ ସୁଦ୍ଧା ତାଙ୍କ ସ୍ତ୍ରୀ କୋର୍ଟରେ କରିଥିବା କେସ୍ ଚାଲିଥିଲା ଏବଂ ମୁଁ ଆସିବା ପର୍ଯ୍ୟନ୍ତ ସେ ଘର ଛାଡ଼ିବାକୁ ରାଜି ନଥିଲେ । ମୁଁ ଆସିବା ସକାଳୁହିଁ ସେ ବଙ୍ଗଳା ଛାଡ଼ି ବଙ୍ଗଳାର ଆଉଟ ହାଉସରେ ରହିଥିଲେ । ସବୁ ଆସବାବପତ୍ର ହଠାତ୍ ବାହାର କରି ନ ପାରି କେତେକ ଛାଡ଼ି ଯାଇଥିଲେ ବଙ୍ଗଳା ମାଳି ଜିମାରେ ।

ମୋତେ ଅବଶ୍ୟ ସେ ଟେବୁଲ ଚେୟାର ଓ ଖଟ ଯଥେଷ୍ଟ ସାହାଯ୍ୟ କରିଥିଲା । ଏଥିପାଇଁ ମୁଁ ତାଙ୍କୁ ଧନ୍ୟବାଦ ଦେବାର ସୁଯୋଗ ଖୋଜି ବୁଲୁଥିଲେହେଁ ହଠାତ୍ ତାଙ୍କୁ ଦେଖା କରିବା ପାଇଁ ଆଉଟ ହାଉସକୁ ଚାଲିଯାଇ ପାରୁନଥିଲି । ଯା ମଧ୍ୟରେ ସେ ମଧ୍ୟ କିଛିଦିନ ପାଇଁ ନଥିଲେ– ସ୍ୱାମୀଙ୍କୁ ନେଇ ପାଟନାରେ କୌଣସି ଏକ ନର୍ସିଂହୋମରେ ରଖି ଆସିଥିଲେ ।

ସେଦିନ ଫାଇଲ ଉପରେ ଡ୍ରାଇଭର ଦରଖାସ୍ତ କରିଥିଲା ତାର ଘର ନାହିଁ । ସେ ଆଉଟ ହାଉସରେ ରହିବା କଥା– ନୋଟିସ ଦେବାକୁ ପଡ଼ିବ ଆଉଟ ଖାଲି କରିବା ପାଇଁ ।

ଟିକିଏ ଭାବିଲି । ଏକ ନିଃସହାୟ ମହିଳା – ସ୍ୱାମୀ ପଙ୍ଗୁ ଓ ଶଯ୍ୟାଶାୟୀ । ବାଧ୍ୟରେ ପଡ଼ି ସିନା ସେ ଆଉଟହାଉସରେ ଆଶ୍ରା ନେଇଚନ୍ତି । ତାଙ୍କୁ ଏପରି ଭାବରେ ନୋଟିସ ଦେବାକୁ ଟିକିଏ କିନ୍ତୁ ବୋଧ କରୁଥିଲେ ହେଁ ନୋଟିସରେ ଦସ୍ତଖତ କରି ଫାଇଲ ମୁଁ ପଠାଇ ଦେଇଥିଲି ।

ସନ୍ଧ୍ୟାବେଳେ ବୁଲା ବୁଲି କରି ଫେରି ଆସି ଘରେ ମୁଁ ପୂଜାରୀ ପାଖରୁ ଶୁଣିଲି ଭଦ୍ରମହିଳା ଆସିଥିଲେ କିଛିଦିନ ସମୟ ମାଗିବାକୁ । ସେ ଟିଏ ଦରଖାସ୍ତ ଦେଇ ଯାଇଥିଲେ । ଦରଖାସ୍ତରେ କ'ଣ ଲେଖିଚନ୍ତି ପଢ଼ିବା ଆଉ ଦରକାର ନଥିଲା– ତାପରେ ଆଉ ମାସେ ପନ୍ଦର ଦିନ ସମୟ ଦେବାକୁ ମୋର ଆଦୌ ଅନିଚ୍ଛା ନଥିଲା ।

ଖାଇବାକୁ ବସିଚି । ପୂଜାରୀ ଆରମ୍ଭ କଲ ସନ୍ଧ୍ୟାବେଳେ ଆସିଥିବା ମହିଳାଙ୍କ ବିଷୟ – ତାଙ୍କ ଘର କଥା । ନିହାତି ଅସାଧାରଣ ନୁହେଁ ।

ପୁରୁଷର ବ୍ୟବହାରରେ ନାରୀର ଅତିଷ୍ଠ ଅବସ୍ଥିତି ସେଇ ପତ୍ନୀଣା ସନ୍ଦେହ । ଦୁଇଟି ପିଲା ପିଛି ସତ୍ତ୍ୱେ ବାରମ୍ବାର ସ୍ତ୍ରୀଙ୍କୁ ସେଇ ପ୍ରଶ୍ନ ।

'ତମେ ଏତେଦିନ ପରେ ମଧ୍ୟ ତମ ସେଇ ପିଲାକୁ ଭୁଲି ପାରିନ' ?

'ଭୁଲିବାର ସୁଯୋଗ ପାଇଲେ ତ' ।

'ମାନେ ?'

'ମାନେ ଆଉ କଅଣ ? ସେଇ କୈଶୋରର ସ୍ମୃତିକୁ ମନରୁ ଦୂର କରିବାର କାରଣ ପାଇଲେତ ।'

'ତମର ଏଇଟା ବିବାହ ପୂର୍ବରୁ ଚିନ୍ତା କରିବା ଉଚିତ ଥିଲ ।'

"ସେ ତ ଅନ୍ୟକଥା– ତମେ ତ ବିବାହ ବେଳକୁ ବେଶ୍ ବୟସ୍କ ହୋଇଥିଲ –

ଗଗନି ମୁଁ ତମକୁ ବୁଢା ବୋଲି କିଛି ଦୋଷାରୋପ କରିବାକୁ ଯାଉନି –

ବାପାଙ୍କୁ କହି ଏମିତି ଭୁଲାଇ ଦେଲ ଯେ ବିବାହ ପୂର୍ବରୁ ମୋ କଥା ଉପରେ କେହି ଗୁରୁତ୍ୱ ଦେଲେନି ।"

'ଜୋର ଜବରଦସ୍ତିରେ ତମର ବିବାହ କରାଯାଇ ନଥିଲ ।'

'ଖାଲି ଜଣ ଦଉଡ଼ିରେ ବାନ୍ଧିଲେ ଜୋର ଜବରଦସ୍ତ କୁହାଯାଏ ? ତା'ପରେ ତମ କାନକୁତ ମଧ୍ୟ ମୋର ଅନିଚ୍ଛା ବିଷୟ ଯାଇଥିଲ ।

ଏମିତି ବହୁତ କଥା । ଲୋକଟିର ଗୁଣ ନିହାତି ଖରାପ । ଏତେ ବେଶୀ ସେ ତାଙ୍କ ବିଷୟରେ ଖବର ରଖିବାକୁ ଚେଷ୍ଟା କରିଛି ଶୁଣି ମୁଁ ଆଶ୍ଚର୍ଯ୍ୟ ହେଲି । ପରର ଘରୋଇ ବ୍ୟାପାର ଏପରି ଶୁଣିବା ଅନୁଚିତ ; ହେଲେବି ଗୋଟିଏ ନାରୀର କୈଶୋର ପ୍ରେମର ରୂପରେଖାର ଆଭାସ ପାଇ, ଆହୁରି ବେଶୀ ଶୁଣିବାକୁ ମୁଁ ଏଣୁ ତେଣୁ ତାକୁ ପ୍ରଶ୍ନ କରୁଥିଲି ।

ଦରଖାସ୍ତ ଦେବାକୁ ଆସି ସେ ପ୍ରଶ୍ନ କଲେ ମୋ କଥା – ମୁଁ କାହିଁକି ବିବାହ ଏ ପର୍ଯ୍ୟନ୍ତ କରି ନାହିଁ ? ମୋ ଘରେ ଆଉ କିଏ କିଏ ଅଛନ୍ତି ? ବାବୁ କଣ ଖାଆନ୍ତି ଇତ୍ୟାଦି ।

ଏ କଥାରେ ମୁଁ ଟିକିଏ ବିସ୍ମିତ ହେଲି । ମୁଁ ଉଠି ମୁହଁ ଧୋଇଲି ।

ତା'ପରେ ପନ୍ଦର ଦିନ ଏକ୍‌ସ୍‌ଟେସନ୍ ମଧ୍ୟରେ ମୁଁ ପ୍ରତ୍ୟେକ ଦିନ ପୂଜାରୀ ପାଖରୁ ଶୁଣିବାକୁ ପାଇଲି ନାରୀଟିର ମୋ ବିଷୟରେ ଏତେ ଉତ୍ସୁକତା – ଆଶ୍ଚର୍ଯ୍ୟ ହେଲି – ଭୟ ମଧ୍ୟ ହେଲା । ଏହା ମଧ୍ୟରେ କିଛି ଖେଳ ନାହିଁତ । ସେ ବଙ୍ଗବାସୀ ମହିଳା – ଏଣେ ମୋ ପକ୍ଷରେ ବିଦେଶ ଜାଗା–କିଛି ବଦନାମ କରି ଫାଇଦା ଉଠାଇବା ମତଲବ ନାହିଁତ !

ସେଦିନ ଅଫିସରୁ ଦିନ ଦୁଇଟା ବେଳେ ଫେରି ମୁହଁ ହାତ ଧୋଇ ଖାଇସାରି ଶୋଇବା ଘରକୁ ପଶିଗଲି । ଏତେଦିନ ପରେ ମଧ୍ୟ ମୋ ଜିନିଷପତ୍ର ସବୁ ଅସଜଡ଼ା ହୋଇ ପଡ଼ିଥିଲା ।

କିନ୍ତୁ ଆଜି ହଠାତ୍ ଲକ୍ଷ୍ୟ କଲି ସବୁ ସୁନ୍ଦର ଭାବରେ ସଜାସଜି ହୋଇ ରହିଛି । ଖୁସି ଲାଗିଲା, ପୂଜାରୀର ଯାହାହେଉ ସବୁ ଆଡକୁ ନଜର ଅଛି ।

ସେ ଗୁଆ ମସଲା ଆଣି ରଖିଦେଇ କହିଲା –

'ମା ଆସି ଆଜି ସକାଳୁ ଠାରୁ ଲାଗିଥିଲେ, ଏଇ ଦଣ୍ଡେ ହେଲା ଗଲେ ।'

ମୁଁ 'ମା' ଆସିବା କଥା ହଠାତ୍ ବୁଝି ନପାରି ଟିକିଏ ପରେ ଅନୁମାନ କରିନେଲି । ଟିକିଏ ଅସନ୍ତୁଷ୍ଟ ହୋଇ କହିଲି –

'କାହିଁକି ତୁ ତାଙ୍କୁ ମୋ ଜିନିଷପତ୍ରରେ ହାତ ଦେବାକୁ ଛାଡ଼ିଲୁ ?'

ବିଚରା ଡରିଗଲା ।

ତାକୁ ବିଦାୟ ଦେଇ ମୁଁ ଘରିଆଡକୁ ନଜର କଲି ।

ବିଛଣା ପୂରା ଖୋଲି ନୂଆ କିଣାହୋଇ ଆସିଥିବା ପଲଙ୍କ ଉପରେ ପଡ଼ିଛି । ସଫା ଚଦର ବାହାର କରା ହୋଇଛି । ବାକିତକ ବିଛଣା ଓ୍ୱାର୍ଡରୋବର ତଳ ଥାକରେ ଯତ୍ନରେ ସାଇତା । ସୁଟକେଶରୁ ସୁଟ୍ ଆଉ ସାର୍ଟପେଣ୍ଟ ମଧ୍ୟ ଓ୍ୱାର୍ଡରୋବ ଭିତରେ ହେଙ୍ଗାର ଦେଇ ଟଙ୍ଗା ହୋଇଛି । ଡ୍ରେସିଂ ଟେବୁଲଟା ପରିଷ୍କାର ହୋଇ ତା' କଡରେ ଫୁଲଦାନିଟାରେ ରହିଛି ଗୋଛାଏ ରଜନୀଗନ୍ଧା । ଏ ପାଖରେ ରାଇଟିଂ ଟେବୁଲ ଉପରେ ଷ୍ଟେନଲେସ-ଷ୍ଟିଲ ଫ୍ରେମରେ ମୋର ଗୋଟାଏ ଫଟୋ ସୁଟକେଶରୁ ବାହାର କରାହୋଇ ଥୁଆ ହୋଇଛି– ଟେବୁଲ କ୍ଲଥ ମଧ୍ୟ ପଡ଼ିଛି । କେତେଟା ବହି, ପତ୍ରିକା, ଚିଠିଲେଖା ପ୍ୟାଡ, କଲମ ଯଥାସ୍ଥାନରେ । ମୁଣ୍ଡ ପାଖରେ ଛୋଟ ଟେବୁଲଟା ଉପରେ ରେଡ଼ିଓଟା ।

ମନ୍ଦ ଲାଗିଲନି । କିନ୍ତୁ ମୁଁ ଆଦୌ ପସନ୍ଦକରି ପାରିଲିନି ଏପରି ବ୍ୟବହାର । ମୁଁ ସତରେ ଅଧୈର୍ଯ୍ୟ ହୋଇ ପଡ଼ିଥିଲି ଏଇ ଜବରଦସ୍ତ ଆନ୍ତରିକତା ଦେଖି ।

ଉପରଓଳି ଅଫିସ ଯାଇ ଫାଇଲ ମଗାଇ ଦେଖିଲି ପନ୍ଦର ଦିନ ପୂରିବାକୁ ଚାରି ଦିନ ଆହୁରି ବାକି ଅଛି । ବସି ବସି କିଛି ସମୟ ଚିନ୍ତା କଲି– ନାଃ ଆଉ ବେଶୀ ପ୍ରଶ୍ରୟ ଦେବା ଠିକ ହେବନି । ସେଦିନ ଆଉଥରେ ଅର୍ଡର କରି ଆସିଲି 'ନିହାତି ଅସୁବିଧା ବଶତଃ କ୍ଷମାନି ଜଣାଇବାକୁ ବାଧ୍ୟ ହେଉଛି ଯେ ତାଙ୍କୁ ଦୁଇଦିନ ମଧ୍ୟରେ ଉଠିଯିବାକୁ ପଡ଼ିବ' – ଇତ୍ୟାଦି ।

ଦ୍ୱିତୀୟ ଦିନ ସକାଳୁ ମୁଁ ବାରନ୍ଦାରେ ବସି ଖବରକାଗଜ ପଢୁ ପଢୁ ଲକ୍ଷ୍ୟ କଲି ଆଉଟହାଉସ ପାଖରେ ବ୍ୟସ୍ତତା – ଅନୁମାନ କଲି ଟ୍ରକରେ ଜିନିଷପତ୍ର ଲୋଡ଼ିଂ ହେବାର । କିଛି ସମୟ ପରେ ଲୋକ ଆସି ବଙ୍ଗଳାରେ ଥିବା ଆସବାବପତ୍ର ମଧ୍ୟ ନେଇଗଲେ । (ଯା ମଧ୍ୟରେ ମୋ ନିଜର ସବୁ ଆସି ଯାଇଥିଲା । )

ବହୁ ସମୟ ପରେ ମୁଁ ଗାଧୋଇ ଖାଇ ଲୁଗାପଟା ପିନ୍ଧି ଅଫିସକୁ ବାହାରି ଆସି ଗେଟ୍ ପାଖରେ ପହଞ୍ଚିଛି ; ଦେଖିଲି ରାସ୍ତା ଉପରେ ବୋଝାଇ ଟ୍ରକଟାଏ ଗଲା ।

ମୁଁ ରୁମାଲଟାଏ ଆଣିବାକୁ କହି ଗେଟ୍ ପାଖରେ ଅପେକ୍ଷା କରିଥିଲି । କିଛି ସମୟ ପରେ ଗୋଟିଏ ଟେକ୍ସି ଆଗେଇ ଆସିଲା ।

ମୁଁ ମୁଣ୍ଡଟେକି ଟେକ୍ସି ଭିତରକୁ ଚାହିଁଲି ।

'ଆରେ ଆରତି !'

ଖୁବ୍ ବଡ ପାଟିରେ ମୁହଁରୁ ବାହାରି ପଡ଼ିଲା ।

ମୁଁ ସେମିତି ସ୍ଥାଣୁ ହୋଇ ଛିଡା ହୋଇ ରହିଲି ।

ଝରକା ଦେଇ ଆରତି ମୁହଁ ଦେଖାଯାଉଥିଲା । ଏତେ ଦୂରରୁ ମଧ୍ୟ ମୁଁ ତା ଆଖିରେ ଲୁହ ଦେଖି ପାରୁଥିଲି ।

ତା'ପରେ ଛୋଟ ଗୁଲୁଗୁଲିଆ ମୁହଁଟିଏ ହାତ ବାହାର କରି "ଟା ଟା," କଲା ।

ମୁଁ ପ୍ରକୃତିସ୍ଥ ହୋଇ ହାତ ଉଠାଇ ବିଦାୟ ଦେବାବେଳକୁ ଟେକ୍ସିଟା ମୋଡ ବୁଲିବା ଆରମ୍ଭ କରିଥିଲା ।



# ଅମୃତର ସନ୍ଧାନ

ଫେରିଆସି ବନ୍ଦନାକୁ କହିଲି "ଡାନ୍" ।

ତା ମୁହଁରୁ ଲୁଚିଗଲା ବ୍ୟସ୍ତତାର ଭାବ । ସ୍ୱାମୀ ଉପରେ ସମ୍ପୂର୍ଣ୍ଣ ଆସ୍ଥା ତାର । ହସି କହିଲା 'କେତେ ଦେଲ' ?

"ଦେଇନି, ସେ ଆସିବ ।"

ବହୁତ ବେଶୀ ହୋଇଯିବ ।

'ନହେଲେ ଦେବନି ଯେ । ଯାହାହେଉ ପଛେ ଛୁଆଗୁଡାକ ଅନ୍ତତଃ ଆରାମରେ ଶୋଇ ପାରିବେ ।'

'ଟିକେଟ ନେଇ ଆସିଲତ' ?

'ନା ସେ ଖଡଗପୁରରେ ଆସି ଦେଇ ଯିବ' ।

'ଦେଖ ଦେବତ ଠିକ୍, ଯା ଭିତରେ ଡ୍ୟୁଟି କାହାରି ଚେଞ୍ଜ୍ ହେବାର ନାହିଁତ ?'

'ନାଁ ମ, ବ୍ୟସ୍ତ ହୁଅନା । ବ୍ୟବସ୍ଥା କରି ଦେଇଚି ଠିକ୍ ।'

ମୁଁ ବାହାରକୁ ଅନାଇଲି ; ବୋଧହୁଏ ଟ୍ରେନ କ୍ରସ କରୁଥିଲା କୌଣସି ଷ୍ଟେସନ । ସନ୍ଧ୍ୟାବେଳୁ ବ୍ୟସ୍ତତା ନେଇ ଏପଟ ସେପଟ ହୋଇ

ଏତେବେଳକୁ ଟିକିଏ ଶାନ୍ତିରେ ବସି ଭାବିଥାଉକୁ ଭାବିଁଲି । ଟାଟାରୁ ଖଡଗପୁରର ସବୁଦିନିଆ ପେସେଞ୍ଜରମାନଙ୍କ ପାଇଁ ବୋଧହୁଏ ଏଇ ଉତ୍କଳ ଏକ୍ସପ୍ରେସର ସମୟଟା ବେଶ ସୁବିଧାଜନକ । ଦୁଇ ଘଣ୍ଟା ଡେ଼ରି ଥିଲେବି ଥ୍ରିଟାୟାର ସ୍ଲିପରର ଦ୍ୱାର ପାଖଟା ଖାଲି ବାସେଟ ଆଉ ବସ୍ତା ଧରିଥିବା ଲୋକରେ ଭର୍ତ୍ତି । ଖଡଗପୁରରେ ସବୁ ଓହ୍ଲାଇ ଗଲପରେ ଟିକେ ଶାନ୍ତିରେ ନିଃଶ୍ୱାସ ନେଇ ହେବ ।

ସନ୍ଧ୍ୟାବେଳୁ ଲାଗିଚି ବ୍ୟସ୍ତତା । ପ୍ରଥମତଃ ଦୁଇ ଘଣ୍ଟା ଡେରି କରି ଆସିଚି ଟ୍ରେନ୍ । ତା ସାଙ୍ଗକୁ ଆମେ ବାପ ମା ଛୁଆପିଲା ମିଶି ପାଞ୍ଚ ଜଣଙ୍କ ପାଇଁ ଗୋଟିଏ ମାତ୍ର ବାର୍ଥର ରିଜାରଭେସନ ମିଳିଥିଲା । ଟାଟା କୋଟା ଗୋଟିଏ ମାତ୍ର ; ଏଣୁ ବାକି ଚାରିଟା ଓ୍ୱେଟିଙ୍ଗ ଲିଷ୍ଟ । ଭାବିଥିଲି ନିଶ୍ଚୟ ମିଳିଯିବ । କିନ୍ତୁ ଟ୍ରେନରେ ଉଠିବା ବେଳକୁ ଟିଟିଆଇ ସାବଧାନ କରି ଦେଇଥିଲା – 'ଦେଖନ୍ତୁ ବାର୍ଥ ଖାଲି ନେଇ, ବେଉଳରେ ଦେବ ସବାଇକେ ।'

ମୁଁ ଇଂରାଜୀରେ କହିଲି 'ମୋର ଗୋଟେ ରିଜାରଭେସନ ଅଛି ଓ ଚାରିଟା ଓ୍ୱେଟିଙ୍ଗ ଲିଷ୍ଟରେ ; ଦୟା କରି ବ୍ୟବସ୍ଥା କରିବେ ।'

ଭଦ୍ରଲୋକ ମୋ ମୁହଁକୁ ଯେପରି ଭାବରେ ଚାହିଁ ଉତ୍ତର ଦେଲେ ମୁଁ ଭାବିଲି ସତେ ଯେପରି ମୁଁ କିଛି ଅଭଦ୍ରତା କଲି ତାଙ୍କ ସହ । କହିଲେ ଇଂରାଜୀରେ– 'ନା ଆଦୌ ସିଟ୍ ନାହିଁ, ହୋଇ ପାରିବ ନାହିଁ ।' ମୁଁ ନୀରବ ହେଲି । କୁଲି ଜିନିଷପତ୍ର ରଖି ଦେଉଥିଲା, ଛୁଆମାନେ ସବୁ ଉଠି ଯାଉଥିଲେ, ସେ ଭଦ୍ରଲୋକ ପୁଣି କହିଲେ –

"ସାବଧାନ କରି ଦେଉଚି, ମୁଁ ଓହ୍ଲାଇ ଦେବି ସମସ୍ତଙ୍କୁ । ଆପଣ ମନେ କରନ୍ତୁ ନାହିଁ ଯେ ଆପଣଙ୍କ ଗୋଟିଏ ବାର୍ଥରେ ଆପଣମାନେ ସମସ୍ତେ ବସି ଚାଲିଯିବେ । ମୁଁ ଜଣେ ହେଲେ ବସିବା ଲୋକ ଏଲାଓ କରିବି ନାହିଁ ।"

ମୁଁ ବର୍ତ୍ତମାନ ଟିକିଏ ଅସୁବିଧା ଅନୁଭବ କଲି । ଭାବିଥିଲି ନାହିଁ ଜରିବା ପ୍ରାୟ ସାଧାରଣ କଥା । ପାଉଣାଟା ମିଳିଗଲେ ଠିକ୍ ରାସ୍ତାକୁ

ଆସିଯିବ । ଭିତରକୁ ଉଠିଆସି ଯେଉଁ ଗୋଟିଏ ଚଳ ବାର୍ଥ ମିଳିଥିଲା ସେଥିରେ ସମସ୍ତେ ବସିଗଲୁ ।

ଟ୍ରେନ୍ କିନ୍ତୁ ଛାଡ଼ୁନି ।

ହଠାତ୍ ଭଦ୍ରଲୋକ ଆସି ପୁଣି ପହଞ୍ଚିଗଲେ ଏବଂ ସେଇକଥା ଦୋହରାଇ ଗଲେ । ମୁଁ ଟିକିଏ ଏଥର ଅଫେନ୍‌ସିଭ ହୋଇ କହିଲି 'ମୁଁ ଦେଖୁଚି ଆହୁରି ଲୋକତ ବିନା ରିଜାରଭେସନରେ ଉଠିଛନ୍ତି ଏବଂ ସେମାନେ କହୁଛନ୍ତି ଆପଣ ତାଙ୍କୁ ଏସିଓରେନ୍‌ସ ଦେଇଛନ୍ତି । ଯଦି ଏଠାରୁ କେହି ରନିଂ ଟ୍ରେନ୍‌ରେ ଟିକେଟ ପାଏ ତେବେ ମୁଁ ସେଟା ପାଇବି କାରଣ ମୁଁ ଅଛି ଓ୍ୱେଟିଙ୍ଗଲିଷ୍ଟର ପ୍ରଥମରୁ ଚତୁର୍ଥ ।'

ସଙ୍ଗେ ସଙ୍ଗେ ଗର୍ଜି ଉଠିଲା ପରି ସେ କହିଲେ– ଯେଉଁମାନେ ଏସିଓରନ୍‌ସ୍ ପାଇ ଉଠିଛନ୍ତି ସେମାନେ ସବୁ ଗଡ଼ରକେଲରୁ ଉଠିଛନ୍ତି ଗଡ଼ରକେଲ କୋଟାରେ । ଟାଟାରୁ କେହି ନୁହେଁ ।' ମୁଁ ଅଗତ୍ୟା ଚୁପ ରହିଲି । ସେ ମଧ୍ୟ ଅନ୍ୟ କେହି ଜଣେ ଯାତ୍ରୀ ସହ ବ୍ୟସ୍ତ ହୋଇ ଆଗେଇ ଗଲେ । ବନ୍ଦନା କହିଲା– 'କାହିଁକି ରଗେଇ ଦେଲ ଲୋକଟାକୁ ? ତମ ବଂଶର ଏଇ ଗୁଣଟାତ ଗଲା ନାହିଁ । ଟିକେ କଥାକୁ ପାଟି କର ।'

'ଓଃ, ରହନା ତମେ ବ୍ୟସ୍ତ ହୁଅନାହିଁ ।'

କିନ୍ତୁ ମୁଁ ମନେ-ମନେ ବ୍ୟସ୍ତତା ଅନୁଭବ କରୁଥାଏ । ଉଠିଗଲି ସେ ଯିବା ପଥ ଅନୁସରଣ କରି । ଭଦ୍ରଲୋକ ଅନ୍ୟମାନଙ୍କୁ ମଧ୍ୟ ସେହିପରି ମନା କରୁଥାନ୍ତି । ଗୋଟିଏ ଗୋଟିଏ ଟିକେଟ ଇସୁ କରୁଥାନ୍ତି । ମୁଁ ଭଲ କରି ନଜର କରିଥାଏ କୌଣସିଟା ଟାଟାରୁ ନୁହେଁ, ଖଡ଼ଗପୁର ବା ଚକ୍ରଧରପୁରରୁ ।'

ମୁଁ ପିଛା ଧରିଥାଏ ।

ଇତି ମଧ୍ୟରେ ଟ୍ରେନ୍ ଛାଡ଼ି ଦେଇଛି ।

ମଝିରେ ମଝିରେ ଭଦ୍ରଲୋକଙ୍କ ନଜର ମୋ ଉପରେ ପଡ଼ିଯାଏ । ମୁଁ ମୁହଁରେ ଟିକିଏ ବିନତିର ଭାବ ଦେଖାଇବାକୁ ଚେଷ୍ଟା କରେ । ବର୍ତ୍ତମାନ ଅବସ୍ଥାରେ ଲୋକଟାକୁ ଖୁସି କରି ନପାରିଲେ ବଡ଼ ଅସୁବିଧାରେ ପଡ଼ିବାକୁ ପଡ଼ିବ । ପାଞ୍ଚ ଦିନ ଟାଟାରେ ଶଶୁର ଘରର ମଜା ଏଇ ପ୍ରସ୍ଥାନ ପଥରେ ଟାଟାରୁ ଭୁବନେଶ୍ୱର ଭିତରେ ସବୁ ଠିକ୍ ହୋଇଯିବ ।

ମୁଁ କିଛି କହିବା ପୂର୍ବରୁ ସେ ମଝିରେ କହିଲେ– 'ହେବନି କହୁଚି, ଆପଣ କାହିଁକି ମୋ ପଛରେ ଲାଗିଛନ୍ତି । ଆପଣ ସିନି ଷ୍ଟେସନ୍‌ରେ ଅନ୍ୟ ଡବାରେ ବ୍ୟବସ୍ଥା କରନ୍ତୁ ।' ମୁଁ ଟିକେ ଅପ୍ରତିଭ ହେଲି । କିଛି ସମୟ ଛାଡ଼ି ଟିକେ ପାଖେଇ ଯାଇ ନିମ୍ନ ସ୍ୱରରେ କହିଲି– "ପ୍ଲିଜ୍, ଛୁଆପିଲାଙ୍କୁ ନେଇ ଗଡିଟାରେ ମୁଁ କୁଆଡେ ଯିବି ? ଏଠି ବର୍ଥରେ ଜଣକୁ ରଖିଦେଇ କୁଆଡେ ଆମେ ଯାଇ ପାରିବୁ ?'

ସେ ଅନ୍ୟ ଆଡେ ବ୍ୟସ୍ତ ରହିଲେ କିଛି ସମୟ । ଛତି ମଧ୍ୟରେ ମୁଁ ପକେଟରୁ ବାହାର କଲି ସ୍ଲିପିଟା ରିଜରଭେସନ୍‌ର ଚାର୍ଜ ଏଗାର ଟଙ୍କା, ଆଉ ତା ସହ ଗୋଟିଏ ପଚାଶଟଙ୍କିଆ ନୋଟକୁ ମୁଁ ଆଙ୍ଗୁଳି ସନ୍ଧିରେ ଏପରି ଧରିଲି ଯେପରି ସେ ଦେଖି ପାରିବେ । ଏଇ ବ୍ୟବସ୍ଥା କରିସାରି ପୁଣି ଥରେ ବିଥର ରିକ୍ୱେଷ୍ଟ କରିବା ସମୟରେ ହାତଟାକୁ ତାଙ୍କ ଆଖି ଆଗରେ ଦେଖାଇବାକୁ ଚେଷ୍ଟା କଲି । ସେ ଥରେ ଦେଖି ସାରିବା ପରେ କହିଲେ– 'ଆପଣ ଚାଲନ୍ତୁ ସେଇଠି ଆପଣଙ୍କ ସିଟରେ ବସନ୍ତୁ । ଇଆଡୁ କାମ ସାରି ମୁଁ ଯାଉଛି ।'

ମନେ ମନେ ହସଟିଏ ହସି ଫେରି ଆସି ବନ୍ଦନାକୁ କହିଲି 'ଡାନ୍' ।

କିଛି ସମୟ ବିତିଗଲା ; ସିନି ଷ୍ଟେସନ ପାର ହୋଇ ଆହୁରି ଗୁଡାଏ ଷ୍ଟେସନ ମଧ୍ୟ ପାର ହେଲା । ଖଡଗପୁର ବେଶୀ ବାଟ ନାହିଁ । ଭଦ୍ରଲୋକ ଆସିଲେ ଆମେ ଟିକିଏ ଘୁଞ୍ଚିଯାଇ ତାଙ୍କ ପାଇଁ ଯାଗା କରି ଦେଲୁ । ମୁଁ ଟିକେଟ ସହ ଟଙ୍କାଟା ତାଙ୍କ ହାତକୁ ବଢ଼ାଇ ଦେଲି । ହାତରେ ନେଇ ସେ ଆଉ ଗଣି ନାହାନ୍ତି କି ଦେଖିବାକୁ ଚେଷ୍ଟା କରି ନାହାନ୍ତି । ପଚାଶ ଟଙ୍କିଆ ନୋଟ ଉପରେ ଗୋଟେ ଦଶ ଟଙ୍କିଆ ଆଉ ଗୋଟିଏ ଟଙ୍କାକିଆ, ଏଣୁ ଭୁଲ ହେବାର କାରଣ ନାହିଁ ।

ଭଦ୍ରଲୋକ ହାତରେ ଧରି ଧୀରେ ଧୀରେ ପକେଟରୁ ରସିଦ ବହି ବାହାର କଲେ । ରିଜାରଭେସନ ଗ୍ରର୍ଟା ବାହାର କରି ଆଖି ବୁଲାଇଲେ ; କହିଲେ ଉପରକୁ ହାତଠାରି 'ଏଇ ଝରକା ପାଖରେ ଦୁଇଟା, ଆଉ ସେ ପାସେଜରେ ଦୁଇଟା, ଚଳିବତ ?'

ମୁଁ ଭବ ଓ ଭଙ୍ଗିରେ କୃତଜ୍ଞତା ଦେଖାଇ କହିଲି 'ଓଃ ଧନ୍ୟବାଦ, ଯେଉଁଠି ହେଲେ ଚଳିବ !'

ସେ ଧୀରେ ଧୀରେ ରସିଦ ବହି ବାହାର କଲେ ଏବଂ ଆହୁରି ଧୀରେ ଧୀରେ ଲେଖିବାକୁ ଲାଗିଲେ । ଖଡଗପୁର ଷ୍ଟେସନ ଆସନ୍ନ ପ୍ରାୟ । ମୁଁ ବ୍ୟଗ୍ର କିପରି ହାତକୁ ରିଜାଭେସନ୍‌ଟା ଆସିଯାଉ । ପ୍ରାୟ ଟ୍ରେନ ଛିଡ଼ା ହେବା ବେଳକୁ ସେ ମୋ ହାତକୁ କାଗଜଟା ବଢାଇ ଦେଲେ, ଆଉ ତାପରେ ପଗ୍ଧଶ ଟଙ୍କିଆ ନୋଟଟା ମଧ୍ୟ ହାତରେ ଧରଇ ଦେଇ କହିଲେ—

'ରିଜାରଭେଁସନ୍ ଗ୍ରର୍ଜଟା ଏଗାର ଟଙ୍କା ମାତ୍ର ।'

ତାଙ୍କ ସ୍ୱରରେ ନଥିଲା ବ୍ୟଙ୍ଗ ବା କୌଣସି ପ୍ରକାର ଇଙ୍ଗିତ । ମୋ ମୁହଁରେ ଭଷା ନଥିଲା । ହଠାତ୍ କିଛି ମୁଁ ଭବି ପାରିଲି ନାହିଁ । ସ୍ଥାଣୁ ହୋଇ ତାଙ୍କ ମୁହଁକୁ ଗ୍ୱହିଁ ରହିଥିଲି ।

ସେ ଓହ୍ଲାଇ ଗଲେ । ମୁଁ ବନ୍ଦନା ମୁହଁକୁ ଗ୍ୱହିଁଲି, ସେ ମଧ୍ୟ ନୀରବ ଓ ସ୍ଥାଣୁ । ମୁଁ ହଠାତ୍ ଅନୁଭବ କଲି ସତେ ଯେପରି ଭଦ୍ରଲୋକ ଚଟି ବାହାର କରି ମୋ ଗାଲରେ ଠାଏ କରି ଗୋଟାଏ ବସାଇ ଦେଇ ବାହାରି ଗଲେ ।



# ଯେତେ ମତ—ସେତେ ପଥ

ବିଶ୍ୱନାଥ ଏ ଗେଟରୁ ସେ ଗେଟ ପର୍ଯ୍ୟନ୍ତ ଆଗେଇ ଗଲେ । କାରଣ ମେ'ଦେବୀ ବା ବାଣୀବିହାରର ଦଳେ ଝିଅ ଆସୁଛନ୍ତି ବୋଧହୁଏ । ସୁବିଧା ପାଇଲେ ଟୋକା ପଂଝାଟା ଘେରି ଯିବେ । 'ବିଶୁଭାଇ' ଆଖପାଖରେ ଥିଲେ ଟୋକାଦଳରୁ କେହି ଭରସିବେ ନାହିଁ । ପୁଣି 'ବିଶୁଭାଇ'ଙ୍କ ବ୍ୟବସ୍ଥା ଏବର୍ଷ ଏ ଅପେରଟାର । ଗତବର୍ଷ 'ପାଲ'ଟା ଠିକ୍ ମନକୁ ପାଇଲା ନାହିଁ କାହାର । ଏବର୍ଷ 'ବିଶୁଭାଇ' ପ୍ରେସିଡେଣ୍ଟ—ଟିକିଏ ଜମେଇକି ନକଲେ ମାନ ରହିବ ନାହିଁ । ନିଜେ ମନ୍ତ୍ରୀ ସେଦିନ ତାଙ୍କୁ ଜବରଦସ୍ତି କହିଲେ ଚଳେ, ବହୁ ଲୋକଙ୍କ ନୀରବ ଆପତ୍ତି ସତ୍ତ୍ୱେ, ପ୍ରେସିଡେଣ୍ଟ କରିଛନ୍ତି ଏ ପୂଜା କମିଟିର । ତାପରେ ବିଶ୍ୱନାଥ ବାବୁ ତାଙ୍କ ଚାକିରି ଜୀବନରେ ଯେଉଁଠି ରହି ଆସିଛନ୍ତି ସେଠାରେ ପୂଜା କରାଇବାରେ ଓସ୍ତାଦ ବୋଲି ବହୁ ନାମ କରିଛନ୍ତି । ହେଲେ ଖୋଦ କ୍ୟାପିଟାଲର ସବୁଠୁ ବଡ କଲୋନୀର ପୂଜା ବ୍ୟବସ୍ଥା ଖୋଦ ମନ୍ତ୍ରୀଙ୍କ ଦ୍ୱାର ହସ୍ତାନ୍ତରିତ ହେବାଟା ସାମାଜିକ ସ୍ଥିତିରେ ତାଙ୍କୁ ବହୁ ଉପରକୁ ଉଠାଇ ଦେଇଟି ।

'ବିଶୁବାବୁ ନମସ୍କାର ।'

'ନମସ୍କାର ନମସ୍କାର ଆସନ୍ତୁ ।' ରଜନୀବାବୁଙ୍କୁ ନେଇ ବସାଇ ବସାଉ ଥିବୁଥିଲେ ବିଶ୍ୱନାଥ । ଏକା ସଙ୍ଗରେ ଚାକିରି ଆରମ୍ଭ କରିଥିଲେ ପ୍ରାୟ ଦୁଇ ଜଣ । ଏକ ସହରରେ ରଜନୀବାବୁ ବି.ଡ଼ି.ଓ. ଏବଂ ସେ

ତହସିଲଦାର । ବି. ଡ଼ି. ଓ. ରୁ ରଜନୀ ସେକେଣ୍ଡ ଅଫିସର, ତା'ପରେ ଏସ୍.ଡ଼ି.ଓ. ହୋଇଗଲେ କୁଆଡେ । ତା ପରେ ପରେ କିନ୍ତୁ ବିଶ୍ୱନାଥ ସେଇ ତହସିଲଦାରରୁ ତହସିଲଦାର ହୋଇ ତାଙ୍କ ବନ୍ଧୁ ମହଲରେ ପରିଚିତ ହୋଇଗଲେ ତହସିଲଦାର-ସ୍ପେଶାଲିଷ୍ଟ ଭାବରେ । ବିଶ୍ୱନାଥଙ୍କର ତହସିଲଦାର ଚାକିରି ନସରୁଣୁ ରଜନୀ ଏ ଡ଼ି.ଏମ୍. ହୋଇଗଲେ । ଏବେ ଭୁବନେଶ୍ୱରର ଏ.ଡ଼ି.ଏମ୍ । ବିଶ୍ୱନାଥ କିନ୍ତୁ ଚେଷ୍ଟା କରି, ଧରାଧରି ଖର୍ଚ୍ଚବାର୍ଚ୍ଚ କରି ଖାଲି ତହସିଲଦାରରେ ରହିଗଲେ । ଯେତେ ଯେଉଁଠି ନୂଆ ସହର ଗଢି ଉଠିଲା ବିଶ୍ୱବାବୁ ସେଠାରେ ତହସିଲଦାର ।

"ବିଶୁଭାଇ ଟିକେ ଇଆଡେ ।"

ବିଶ୍ୱନାଥ ଚାହିଁଲେ । ଜଗନ୍ନାଥ । ସେ ଚାରିଆଡକୁ ଚାହିଁଲେ । ସମସ୍ତଙ୍କ ସାମ୍ନାରେ ଜଗନ୍ନାଥ ସହ ନିଶୂନ ଜାଗାରେ ଆଲୋଚନାଟା ହୁଏତ ଲୋକଙ୍କ ଆଖିରେ ଅନ୍ୟ ରକମ କିଛି ଦେଖାଯାଇ ପାରେ । ଜଗନ୍ନାଥର ସାମାଜିକ ପରିଚୟଟା ସାଧୁ ସମାଜରେ ଗ୍ରହଣଯୋଗ୍ୟ ନୁହେଁ । ଚାନ୍ଦା ଆଦାୟ କରି ମଦ ଖାଏ । ରାସ୍ତାରେ ଝିଅମାନଙ୍କ ପ୍ରତି ଅଶ୍ଳୀଳ କଥା ଓ ଆଚରଣ ପ୍ରକାଶ କରେ । ଏଠି ସେଠି ମାଡପିଟରେ ବହୁ ସମୟରେ ଥାଏ । ଆଗେଇ ଗଲେ ବିଶ୍ୱନାଥ । 'ସାର୍ ସେ ଜଗବନ୍ଧୁର ଦଳଟା ଘୁରି ବୁଲୁଛନ୍ତି । ଯଦି କହିବେ ଦେଖି ନେବିକି ?'

'ନାଁ ନାଁ ତାଙ୍କ ଆଡୁ କିଛି ଗଣ୍ଡଗୋଳ ନ ହେଲେ ଚୁପ୍ ଚାପ୍ ଥାଅ ।'

'ହେଉ ସାର୍' ।

ଟିକିଏ ନୀରବ ରହି ପୁଣି କହିଲା– 'ପିଲାଗୁଡ଼ା ସାର୍ ବଜସିସ ପଜସିସ୍ କଣ ଟିକେ ଖୋଜୁଥିଲେ । ମୁଁ କହୁଥିଲି ... ।'

'ଆଚ୍ଛା ଆଚ୍ଛା' କହି ବିଶ୍ୱନାଥ ପଚାଶ ଟଙ୍କିଆ ନୋଟଟେ ବାହାର କରି କେହି ନ ଦେଖିବା ଅବସ୍ଥାରେ ଧରାଇ ଦେଇ ଆଗେଇ ଗଲେ ।

ଅପେରା ଆରମ୍ଭ ହେବାକୁ ଯାଉଚି । ଲୋକଙ୍କର ଭିଡ଼ କମି ଆସିଲାଣି । ବିଶ୍ୱନାଥ ବାହାକୁ ବାହାରି ଆସିଲେ । ଦାମ ପାନୁଆ ପାଖକୁ ଧୀରେ ଧୀରେ ଆଗେଇ ଯାଇ ନିଜର ପାନ ଅର୍ଡର ଦେଇ ଯୋଡ଼ିଦେଲେ ସାଦାପାନ ଦିଟା ରଜନୀ ପାଇଁ । ରଜନୀ ଏବେ ସେକ୍ରେଟାରିଏଟକୁ ଆସିବ ବୋଲି ଶୁଣା ଯାଉଚି । ସେଦିନ ରାଜମହଲ ପାଖରେ ସାଇକେଲରେ ପମ୍ପ ଦେଉଥିଲେ ରଜନୀ । ପଗ୍ଭରିଥିଲେ ବିଶ୍ୱନାଥ—'କଣ ହେଲା ?' ରଜନୀ 'କଣ ହେଉଚି କେଜାଣି' କହି ଚୁପ ରହିଲେ ଓ ସାଇକେଲ ନେଇ ତରତରରେ ସିଟ୍ ଉପରକୁ ଉଠି ପଡ଼ିଲେ । ବିଶ୍ୱନାଥ ସ୍କୁଟରଟା ଷ୍ଟାର୍ଟ କରୁ କରୁ ରଜନୀ ଲୁଚିଯାଇଥିଲେ ସେକ୍ରେଟେରିଏଟ ଫେରନ୍ତା ସମସ୍ତ ସାଇକେଲ ଦଳ ସହ । ସ୍କୁଟରରେ ଆଗେଇ ଗଲେ ବିଶ୍ୱନାଥ ସବୁ ସାଇକେଲ ସହ ରଜନୀକୁ ପଛରେ ପକାଇ ।

ଆଗରେ ମନ୍ତ୍ରୀଙ୍କ ପି.ଏ. ହରମୋହନ—ସ୍କୁଟର ବ୍ରେକ୍ ଧରିଲା 'କଣ ବିଶ୍ୱନାଥ ବାବୁ ଗାଡ଼ି କଣ ହେଲା ; ସ୍କୁଟରରେ ଯେ ?'

'ନା ଗାଡ଼ିଟା ନୂଆ ଆପହୋଲଷ୍ଟ୍ରି କରିଥିଲି । ମୂଷା ପଶି ଟିକେ କାଟି ଦେଇଚି ଯେ ରିପିୟାରକୁ ଦେଇଚି ।'

ସାଙ୍ଗ ହୋଇ ଆଗେଇଗଲେ ପାନ ଦୋକାନ ଆଡ଼କୁ । ବିଶ୍ୱନାଥ ଆଗେଇ ଯାଇ ଅର୍ଡର ଦେଲେ 'ଆରେ ଦାମୁ ଘର୍ଗିଲୁ ଗ୍ଭରିଟା ପାନ ଗୋପାଳ ତିନିଶହ କୋଡ଼ିଏ ଦେଇ ?' 'କଣ ହରମୋହନ ବାବୁ, ଖାଇବ ନା ଅଖାଇରିଆ ?'

ହାତରେ ଫାଣ୍ଟା ବାହାର କରି ଖୋଲି ଧରାଇଦେଲେ ପି.ଏ.ଙ୍କ ହାତକୁ । ମଝିରେ ଦାମ ପାଟି କରି ଉଠିଲା 'ସାର୍‌ଙ୍କ ପାନ ରେଡ଼ି ।' ଏତକ କହି ଧରାଇ ଦେଲା ବିଶ୍ୱନାଥବାବୁଙ୍କୁ । ଯୋଡ଼ିଦେଲା—'ମୋ ପାନ ନ ହେଲେ ସାର୍‌ଙ୍କୁ ପରା ନିଦ ହେବନି । ଆଉ ମୁଁ ଦିନରେ ଗ୍ଭରିଥର ସାର୍‌ଙ୍କୁ ପାନ ନ ଦେଲେ ମୋତେ ଲକ୍ଷ୍ମୀ ସହିବ ନାହିଁ ।'

'ନମସ୍କାର ବିଶୁବାବୁ'– ବିଶ୍ୱରଞ୍ଜନ ମହାପାତ୍ର ଗାଡ଼ିରଖି ଆସି ଯୋଗଦେଲେ । ବିଶ୍ୱରଞ୍ଜନ ବ୍ୟସ୍ତ ହେଉଥିଲେ ପାନ ସାଙ୍ଗରେ ଆଉ କିଛି ପରିଚର୍ଯ୍ୟା କରିବା ପାଇଁ । ବିଶ୍ୱନାଥଙ୍କ ଋଣ ସେ ସୁଝି ପାରିବେ ନାହିଁ । ଭୁବନେଶ୍ୱରର ତହସିଲଦାର ଥିବାବେଳେ ସେ କରିପାରି ଥିଲେ ଦୁଇ ଏକର ଜାଗା ନନ୍ଦନକାନନ ରାସ୍ତାରେ ଏଇ ବିଶ୍ୱନାଥବାବୁଙ୍କ ଦୟାରୁ । ଅବଶ୍ୟ ସେଥିପାଇଁ ଯାହା କିଛି ଦେବାକୁ ପଡ଼ିଥିଲା ସେ କିଛି ନୁହେଁ । ସେତ ଯିଏ ହେଲେବି ନେଇ ଥାନ୍ତା । ଆଉ ଜମିର ଯାହା ବଜାର ଦର ସେ ତୁଳନାରେ ବିଶ୍ୱନାଥ ଯାହା ନେଲେ ସେ କିଛି ନୁହେଁ । ଠିକ୍ ସେମିତି ଦାମ ପାନୁଆ ମଧ୍ୟ ଯେଉଁ ଡ଼ିହ ଖଣ୍ଡକ ପାଇଚି ସେ ଯାହା ହାତଗୁଞ୍ଜା ଦେଲେବି କିମ୍ବା ତା ଜୀବନ ଯାକ ପାନ ଖୁଆଇଲେ ବି ବିଶ୍ୱନାଥବାବୁଙ୍କ ଋଣ ସୁଝି ପାରିବ ନାହିଁ ।

ପାନ ଧରି ଫେରୁ ଫେରୁ ଶୁଣିଲେ ସାଇକେଲରେ ଛୁଟିଛି ପବନା । କଣ ହେଲା, ଘରୁ ଶ୍ରୀମତୀଙ୍କ ତାଗିଦା ପୁଣି କାହିଁକି ?

"ଆଜ୍ଞା କଟକରୁ ଫୋନ୍ ଆସିଥିଲା । ତିନି ତାଲାର ଦୁଇ ନମ୍ବର ବାବୁ କାଲି ଘର ଛାଡ଼ିବେ, ସକାଳୁ କେହି ଯାଇ ଚାବି ପକାଇବ ।"

"ହଉ ମୁଁ ବ୍ୟବସ୍ଥା କରୁଚି ;" ଘର କଥା କହିଲାରୁ ମନେ ପଡ଼ିଗଲା ବିଶ୍ୱନାଥବାବୁଙ୍କ କଳ୍ପନା ଫ୍ଲାଟ୍ ଘରକୁ ପାଣି ଉଠୁନି । ତିନିତାଲାବାଲାଙ୍କୁ ପାଣି ବୋହିବା କଷ୍ଟ ତଳ କୂଅରୁ । କହିଲେ "ତୁ ଯା ରଘୁମିସ୍ତ୍ରୀକୁ ବାଟରେ କହିଦେବୁ, କଳ୍ପନା ଘରେ ତିନିତାଲାକୁ ପାଣି ଉଠୁନି– ଦେଖି ଯିବ ପମ୍ପଟା ।" କହିବୁ 'ପି. ଏଚ୍. ଡ଼ି. ଏସ.ଡ଼ି.ଓଙ୍କୁ ମୋ ନା କହିବ । ବିଶ୍ୱନାଥ ବାବୁଙ୍କୁ ଖାଲି ଖବର ଦେବା ଦରକାର ପଡେ, ଖର୍ଚ୍ଚ କଥା ମୁଣ୍ଡ ଖେଳାଇବାକୁ ପଡ଼େନା ।

ତଥାପି କଟକ ଘର, ଭୁବନେଶ୍ୱର ଘର, ଏଣେ ପରୀରେ ଜମିଜାଗା ବଢିଗଲା ଏସବୁ ଦେଖିବାକୁ ତାଙ୍କୁ ବଡ଼ ବାଧୁଚି । ତା ସାଙ୍ଗକୁ ଆଉ ଚାକିରିରେ ମନ ଲାଗୁନି । ଦୀର୍ଘ ଅଠେଇଶ ବର୍ଷ ପରେ ତହସିଲଦାର ଚାକିରିରୁ ଘୁଞ୍ଚୁ ଏବେ ହୋମରେ ଏସିଷ୍ଟାଣ୍ଟ ସେକ୍ରେଟାରୀ । ପୁଣି

ଏଷ୍ଟାବ୍ଲିସ୍‌ମେଣ୍ଟ, ଫାଇଲ ଦେଖିବାକୁ ତାଙ୍କର ଆଉ ଧୈର୍ଯ୍ୟ ନାହିଁ । ଲେଜଗୁଡ଼ା ଦରମା, ଟି ଏ., ଇନକ୍ରିମେଣ୍ଟ ଇତ୍ୟାଦି ପାଇଁ ଏତେ ଚିଠି ଲେଖି ପାରନ୍ତି ! ରିମାଇଣ୍ଡର ରିପ୍ରେଜେଣ୍ଟେସନ୍– ବାଃବାଃ । କାଇଁ ତାଙ୍କରତ ମନେ ପଡ଼ୁନି ସେ କେବେ ଟି.ଏ.ବିଲ କରିଥିଲେ ବା ଇନକ୍ରିମେଣ୍ଟ ପାଇଁ ଲେଖିଥିଲେ । ଇନକ୍ରିମେଣ୍ଟ କଥା ପଢ଼ିବାରୁ ତାଙ୍କର ମନେ ପଡ଼ିଲା ସତେତ ତାଙ୍କରବି କେତେଟା ଇନକ୍ରିମେଣ୍ଟ ବାକି ଅଛିନା କଣ ! 'ଗୋଟାଏ ଦୁଇଟା'– ଠିକ୍ ମନେ ପଡ଼ୁନି । ସେଇଟା କାଲି ଦେଖି ଗୋଟେ ଲେଖି ଦେବାକୁ ହେବ ।

ଆଜିବି ବିଶ୍ୱନାଥବାବୁ ଠିଆ ହୋଇଥିଲେ ଗେଟ ପାଖରେ । ତାଙ୍କର ସୁନାମ ଥିଲା ଖିଆପିଆ ଭେଜିଭତ ସବୁ ବ୍ୟବସ୍ଥା କରିବାରେ । ଏଣୁ ଖୋଦ ହୋମ ସେକ୍ରେଟାରୀ ତାଙ୍କୁ ଭର ଦେଇଥିଲେ । ଗେଷ୍ଟହାଉସରେ ବ୍ୟବସ୍ଥା । ତାଙ୍କର ନିଜ ଡ଼ିପାର୍ଟମେଣ୍ଟ, ତେଣୁ କଷ୍ଟ କିଛି ନାହିଁ, ଟିକେ ତଦାରଖ କରିବା କଥା । ଆଇ. ଏ. ଏସ୍. ଏସୋସିଏସନର ସ୍ପେସାଲ ମିଟିଂ, ସ୍ପେସାଲ ଡ଼ିନାର । ଚିଫ ସେକ୍ରେଟାରୀଙ୍କ ଠାରୁ ଆରମ୍ଭ କରି ନୂଆ ଆଇ. ଏ. ଏସ୍. ପାଇଥିବା ସମସ୍ତ ଅଫିସର ଆସିବେ, ତା ସାଙ୍ଗକୁ ମୁଖ୍ୟମନ୍ତ୍ରୀ ନିଜେ ଚିଫ୍‌ଗେଷ୍ଟ । ସବୁ ବ୍ୟବସ୍ଥା ନିଖୁଣ ହୋଇଛି । ବ୍ୟାଣ୍ଡପାର୍ଟି ଠାରୁ ଆରମ୍ଭ କରି ଫୁଲମାଳ, ଫୁଲତୋଡ଼ା, ଟେବୁଲ, ଚେୟାର, ସାମିଆନା, ଆଲୁଅ ସବୁ ଅଭିନବ । କୌଣସି ବର୍ଷ ଏସୋସିଏସନର ଆନୁଆଲ ମିଟିଂର ବ୍ୟବସ୍ଥା ଏପରି ହୋଇ ନଥିଲା । ତା ସାଙ୍ଗକୁ ରାତ୍ରି ଭୋଜନର ନୂଆ ମେନୁ, ଆଉ ଡ଼ିନାର ଆଗରୁ ଏପିଟାଇଜାର ଜିରା ପାଣିଠାରୁ ସବ୍ ପର୍ଯ୍ୟନ୍ତ ସବୁର ବ୍ୟବସ୍ଥା ଗେଷ୍ଟ ହାଉସର ଏକ ନିଭୃତ କୋଠରୀରେ, କିଛି ଟିକିଏ ବାଦ ଯାଇନି ।

ଗୋଟିକ ପରେ ଗୋଟାଏ ଗାଡ଼ି ଆସେଇ ଆସିଲା ବେଳକୁ ବଡ଼ ସାହେବମାନେ ବାହାରି ପଡ଼ନ୍ତି, ଆଉ ପ୍ରଥମ ସମ୍ବର୍ଦ୍ଧନା 'ଆରେ ବିଶ୍ୱନାଥ ବାବୁ ନେ, କଣ ଭଲ ଅଛନ୍ତି ?'

ବିଶ୍ୱନାଥବାବୁ ଘରିଆଡକୁ ଗ୍ଳହାନ୍ତି । ଗେଷ୍ଟ ହାଉସର କର୍ମଚାରୀ ସବୁ ଆଷ୍ଟର୍ଯ୍ୟ ଆଖିରେ ତାଙ୍କୁ ଗ୍ଳହିଁ ରହନ୍ତି । ବିଶ୍ୱନାଥବାବୁଙ୍କ ମନେ ପଡେ ହାୟ ସବୁ ବଡ଼ ସାହେବମାନେ ତାଙ୍କରି ଦ୍ୱାରସ୍ଥ ହୋଇଛନ୍ତି । କାହାର ଗାଁ ପାଖରେ ହେଉ ବା କାହାର ବଡ ସହରରେ, ଜମି ଜାଗାର ପଟ୍ଟା ବଣ୍ଟନ କରିଛନ୍ତି ଏଇ ନିଃସ୍ୱ ଲେଣ୍ଡଲେସ ଅଫିସରମାନଙ୍କୁ ବିଶ୍ୱନାଥ ବାବୁ ଏଇ ହାତରେ ।

ମୁଖ୍ୟମନ୍ତ୍ରୀ ଆସି ଓହ୍ଲାଇଲେ । ଚିଫସେକ୍ରେଟାରୀ ଆସି ପାଛୋଟି ନେବା ବେଳକୁ ମୁଖ୍ୟମନ୍ତ୍ରୀଙ୍କ ନଜର ପଡ଼ିଗଲା ବିଶ୍ୱନାଥବାବୁଙ୍କ ଉପରେ । ବିଶ୍ୱନାଥ ଭାବୁଥିଲେ ଅବା ମୁଖ୍ୟମନ୍ତ୍ରୀ ତାଙ୍କୁ ଏଡାଇ ଆଗେଇ ଯିବେ । ସେଥର ଯାହା ହୋଇଥିଲା ନା ।

ଏକା ଥରକେ ଦଶ ଏକର । ନିହାତି ହେଲେ ଇଣ୍ଡଷ୍ଟି ଫିଣ୍ଡଷ୍ଟି ଦେଖାଇ ଏକରେ ବା ଦୁଇ ଏକର ବ୍ୟବସ୍ଥା କରାଯାଇ ପାରେ । ପୁଣି କୋଡ଼ିଏ ଏକରର ଫାର୍ମ ଥିଲା ତାକୁ ଲଗାଇ ସରକାରୀ ଦଶ ଏକର ଜମି ଦେବାକୁ ହେବ । ନିୟମର ଫାଇଲ ଭିତରେ ଗଳାଇ ଉଦ୍ଧାର କରିବା ବାଟ ଅବଶ୍ୟ ବିଶ୍ୱନାଥଙ୍କୁ କେହି ଚପି ଯିବନାହିଁ, ହେଲେ କିଛି ଆଦାୟ ନ କଲେ । ସେତେବେଳେ ବିଶ୍ୱନାଥ କଣ କେବେ ଭାବି ଥିଲେ ସେଇ ଟାଉଟରିଆଟା ଦିନେ ପୁଣି ମୁଖ୍ୟମନ୍ତ୍ରୀ ହେବ । ଭଲକରି ହାଙ୍କିଥିଲେ ସେ–ସିଧା ପଚାଶ ହଜାର । ବହୁତ ଟଣା ଓଟରରେ ତିରିଶ ହଜାରରେ ଛିଡ଼ିଥିଲା । ବିଶ୍ୱନାଥ କିନ୍ତୁ କଥାର ଲୋକ । କେମିତି ହେଲେ ଯାଇ ଆର.ଡ଼ି.ସି ଅଫିସ ରେଭିନ୍ୟୁ ଡ଼ିପାର୍ଟମେଣ୍ଟରୁ କଣ ସବୁ ଯୋଖାଇ ଫାର୍ମିଂ କହି କରାଇ ଆଣିଲେନା ।

ମୁଖ୍ୟମନ୍ତ୍ରୀ ତାଙ୍କ ଆଡକୁ ଗ୍ଳହିଁଲେ, ହେଲେ ନଚିହ୍ନିବା ପରି ଆଗେଇ ଗଲେ–ତାଙ୍କ ପଛେ ପଛେ ସବୁ ବଡ ବଡ ଅଫିସର ।

ହଠାତ୍ ବିଶ୍ୱନାଥଙ୍କ ହୃତ୍‌ସ୍ପନ୍ଦନ ବନ୍ଦ ହୋଇଗଲା । ସେଇ ଦଳ ଭିତରେ ଗଳାବନ୍ଦ କୋଟ ପିନ୍ଧି ଆଗେଇଯାଉଛି ରଜନୀ । ଯା ଭିତରେ ରଜନୀ ଆଇ. ଏ. ଏସ୍. ପାଇଯାଇଛି । ସମସ୍ତଙ୍କ ସାମ୍ନାରେ

ଯେତେ ଗୌରବାନ୍ୱିତ ହୋଇଥିଲେବି ଆଜି ରଜନୀକୁ ଏଇ ଦଳ ଭିତରେ ଦେଖି ସମସ୍ତ 'ନମସ୍କାର' ଓ ସମସ୍ତ ବଡ଼ ସାହେବଙ୍କ କୁଶଳ ଜିଜ୍ଞାସାକୁ ତୁଚ୍ଛା ମନେ କରୁଥିଲେ ବିଶ୍ୱନାଥ ।

ସମସ୍ତେ ଆଗେଇ ଗଲେ ସାମିଆନା ତଳକୁ । ମୁଖ୍ୟମନ୍ତ୍ରୀଙ୍କୁ ଫୁଲମାଳ ଦେବା ପରେ, ନୂଆ ହୋଇ ଆଇ. ଏ. ଏସ୍. ପାଇ ମେମ୍ବର ହୋଇଥିବାରୁ କେତେଜଣଙ୍କ ସହ ରଜନୀକୁ ମଧ୍ୟ ଫୁଲମାଳ ଦିଆଗଲା । ବିଶ୍ୱନାଥ ମେନ ଗେଟପାଖରୁ ଯାଇ ଗାର୍ଡେନ ଗେଟ ପାଖରେ ଛିଡ଼ା ହୋଇ ତାଙ୍କରି ବ୍ୟବସ୍ଥା ମଧ୍ୟରେ ରଜନୀର ଗଳାର ଏତେବଡ଼ ଫୁଲମାଳଟାକୁ ଗୁହିଁଥିଲେ । ନିଜ ବେକରେ ପଡ଼ିଥିବା ତିନିଭରିର ସାଢେ ତିନିଫୁଟ ଲମ୍ବା ସୁନାହାରଟା ତାଙ୍କୁ ସାପ ଗୁଡ଼ାଇ ହେଲା ପରି ଲାଗିଲା ହଠାତ୍ ।

ସେ ଆଉ ଛିଡ଼ା ହୋଇ ନପାରି ବାହାରକୁ ଆସିଲେ ଆଉ ଡ଼ଗ୍ ଡ଼ଗ୍ କରି ଘରମୁହାଁ ଆଗେଇ ଯାଉଥିଲେ । ଗେଷ୍ଟହାଉସର ପଟ୍ଟନାୟକ କହି ଉଠିଲା–'ସାର୍ ଗାଡ଼ିଟା ସେପଟେ ରହିଛି ଯେ !'

'ଓ, ହଁ ହଁ' କହି ବିଶ୍ୱନାଥ ମୁହଁ ବୁଲାଇଲେ । ଗାଡ଼ିଟା କଥା ମନେ ପଡ଼ିଲା ବେଳକୁ ତାଙ୍କର ପୂର୍ବ ରଙ୍ଗ ଫେରି ଆସିଥିଲା ମୁହଁରେ । ପୁରୁଣା ଗାଡ଼ିଟା ବିକ୍ରି ହୋଇଗଲା ମାସେ ହେଲା । ସେ ନୂଆ ଗାଡ଼ିଟା ଡେଲିଭେରି ନେଇଚନ୍ତି ।

ମନେ ମନେ ଭାବିଲେ 'ରଜନୀ ବୋଧହୁଏ ଜୀବନରେ ପ୍ରଥମ ଗାଡ଼ି ଚଢ଼ିଥିବ ସରକାର ଗାଡ଼ି ।' ଭାବି ଭାବି ହଠାତ୍ ହସି ଉଠିଲେ । ପଟ୍ଟନାୟକ ପଚାରିଲା 'ସାର୍ ହସିଲେ ଯେ ?'

'ନାଁ କିଛି ନୁହେଁ । ଗଲ, ସେ ସଚ୍‌ଗଡ଼ା ଆଲମାରୀରେ ଥିଲା, ଖୋଲା ହେଲାକି ନାହିଁ ଦେଖିଲ ।'



# ନାୟକ

ବୟସର ଛାପଟା ହଠାତ୍ ଜଣା ପଡୁ ନଥିଲା । କଳାଚୂଳ ସାଙ୍ଗକୁ ମୁହଁର ଔଜ୍ଜଲ୍ୟ ଏବେ ମଧ୍ୟ ଅମ୍ଳାନ ଦେଖା ଯାଉଥିଲା । ହୁଏତ କାନମୂଳରେ ବା ଓଠର ଗୋଲେଇରେ ସାମାନ୍ୟ ବର୍ତ୍ତୁଳତା ଯାହାକି ସ୍ୱାସ୍ଥ୍ୟବାନର ଲକ୍ଷଣ ମଧ୍ୟ ହୋଇପାରେ, ଏଣୁ ବୟସ ହିସାବ କଲେ ଚାଳିଶ ଯେ ଡେଇଁନି ଏକଥା ସମସ୍ତେ ହଲପ କରି କହିବେ । କିନ୍ତୁ ସତରେ ସେ ପଚାଶ ଡେଇଁ ଯାଇଥିଲେ । ଠିକ୍ କରି କହିବାକୁ ଗଲେ ଆଉ ମାସକ ଭିତରେ ବାବନ ପୁରିଯାଇ ତେପନ ଚାଲିବ ।

ଏ ସବୁ ସତ୍ୱେ ଏତେ ଗୁଡ଼ିଏ ବର୍ଷର ଯୌବନର ଅଧିକାରୀ ହୋଇ ମଧ୍ୟ ତାଙ୍କ ଜୀବନ ଥିଲା ଶୁଷ୍କ. ମାନେ ସେ ଯେ ବିବାହ କରି ନଥିଲେ ବା ସ୍ତ୍ରୀ ସ୍ୱାମୀ ମଧ୍ୟରେ କିଛି ଅଭାବ ଥିଲା ତା ନୁହେଁ । ବରଂ ସେ ଦୃଷ୍ଟିରୁ ଦେଖିବାକୁ ଗଲେ ତାଙ୍କର କିଛି ଅଭାବ ନଥିଲା । ଛବିଶ ବର୍ଷରେ ବାପା ମାଙ୍କ ଦେଖା ଶୁଣା ପରେ ନିଜେ ଦେଖିଶୁଣି ଅତି ସୁନ୍ଦରୀ ନ ହେଲେବି, ସାଧାରଣ ଭାବେ ସୁନ୍ଦରୀ ସ୍ତ୍ରୀଟିଏ ବିବାହ କରି ୩ଟି ସନ୍ତାନର ଜନକ ହିସାବରେ ସେ ବେଶ ଭାଗ୍ୟବାନ । କାରଣ ପିଲାଏ ପ୍ରାୟ ଭଲ ପଢନ୍ତି ଓ ବଡଟି ଡାକ୍ତର । ଏ ବର୍ଷ ଏମ୍. ଡ଼ି. କରି ବାହାରିବ । ଆଉ ସାନ ଝିଅ ଏମ୍. ଏ. ରେ ଭର୍ତ୍ତି ହୋଇଚି ।

ପୈତୃକ ଜମିବାଡ଼ି ବିକି ତାଙ୍କ ବାପା ଆସି କଟକ ସହରରେ ଘର ସହ ଧାଡ଼ିଏ ଦୋକାନ ଘରବି କରିଥିଲେ– ସେ ଯୁଗରେ ଗାଆଁରୁ ବାକି

ଯାହା ଆସେ ସେଥିରେ ବେଶ୍ ସ୍ୱଚ୍ଛନ୍ଦରେ ଚଳିଥିଲେ ଜୀବନସାର । ନିଜ ଜୀବନରେ, ସେଇ ଦୋକାନଘର ଭିତରୁ ଦୁଇଟା ନେଇ ପ୍ରେସଟିଏ ଆରମ୍ଭ କରି ଆଜି ଜଣେ ସ୍ୱନାମଧନ୍ୟ ପ୍ରକାଶକ ସେ । ଏଣୁ ସୁଧୀ ସାହିତ୍ୟିକ ମହଲରେ ଗୁଣଗ୍ରାହୀ ହିସାବରେ ତାଙ୍କର ବେଶ୍ ନାମଡ଼ାକ । ଦରିଦ୍ର ଲେଖକମାନଙ୍କର ଉପଯୁକ୍ତ ପାଣ୍ଡୁଲିପି ସ୍ୱଖର୍ଚ୍ଚରେ ସେ ଛପାଇ ସମାଜରେ ଯଥେଷ୍ଟ ଆଦର ଲାଭ କରିଛନ୍ତି ।

ଏସବୁ ସତ୍ତ୍ୱେ ସେଦିନ ସେଇ ବନ୍ଧୁମାନଙ୍କ ମେଳରେ ତାଙ୍କର ବଡ଼ ଖେଦ– "କଣ ହେଲା ଜୀବନରେ ! କଣ ବା ଅଛି ଆମମାନଙ୍କ ଜୀବନରେ କହିଲେ ? ସେଇ 'ଥୋଡ ବଡ଼ି ଖଡ଼ା, ଆଉ ଖଡା ବଡ଼ି ଥୋଡ ।'

କିଏ ଜଣେ ତାଙ୍କ ଗୁଣଗ୍ରାହୀ ବନ୍ଧୁ ମୁଣ୍ଡ ଟୁଙ୍ଗାରିଲେ "ହଁ ସତତ, ଆମ ଜୀବନରେ କଣ ଆଉ ରସ ଆମେ ସୃଷ୍ଟି କଲେ ଯେ– ଆମେ ଏଇ ସମାଜରେ ଗୋଟେ ଗୋଟେ ଶୃଙ୍ଖଳ ଖଣ୍ଡ ନା ଆଉ କଣ ?"

ଉଣା ଅଧିକେ ସମସ୍ତେ ସମ୍ମତି ଜଣାଇଲେ । ଉତ୍ସାହିତ ହୋଇ ପଟ୍ଟନାୟକେ ପୁଣି ସ୍ୱଗତ ହେବାପରି ହାତର ଆଙ୍ଗୁଳି ଗୁଡ଼ାକ ଆଣ୍ଠୁରେ ବୁଲଉ ବୁଲଉ ତାକୁଇ ଅନାଇ ଅନାଇ କହି ଗଲିଲେ–'ସ୍କୁଲ ଜୀବନଟା ଆନ୍‌ଇଭେଣ୍ଟଫୁଲ ଏପରିକି ଚଟକଣଟାଏ ଖାଇବା ରକମ ବଦମାସୀ କରିନି । କଲେଜ ଜୀବନରେ ତ ହଷ୍ଟେଲରୁ କଲେଜ ଓ କଲେଜରୁ ହଷ୍ଟେଲ ବ୍ୟତୀତ ନିହାତି ବେଶୀହେଲେ ସିନେମାଟେ ଦେଖିବା ଛଡା ଆଉ କିଛିନାହିଁ । ବନ୍ଧବା ଏମିତି କାଁ ଭାଁ ହୋଇଚନ୍ତି । 'ବାନ୍ଧବୀ' ଶବ୍ଦଟା ଖାଲି ଡିକ୍‌ସ୍‌ନାରିର ଗୋଟିଏ ଶବ୍ଦ ଛଡ଼ା ଅଧିକ କିଛି ନଥିଲା । ଆଉ ପଢା ଛାଡ଼ୁ ଛାଡୁତ ବାହାଘର– ଦେଖୁ ନ ଦେଖୁଣୁ ପିଲଛୁଆଙ୍କ ଚିନ୍ତା । ବେଶ ଶେଷ ହୋଇଗଲା– ଏହି ଷ୍ଟେଜ୍‌ର ଶେଲ ସରି ଆସିଲା ।"

ପଟ୍ଟନାୟକେ ଏକଥା କହିବା ବେଳକୁ ଅନ୍ୟମାନେ ସମସ୍ତେ ନିଶ୍ଚୟ ସ୍କୁଲରେ କିଏ କଣ ଦଣ୍ଡ ପାଇଥିଲେ କି କଲେଜରେ ପ୍ରେମପତ୍ର କାହା ଉପରକୁ ପକାଇ ବା କିଛି କାହାକୁ ପଦେ କମେଣ୍ଟ କରି ଚଟିମାଡ

ଖାଉଥିଲେ ; ଅନ୍ୟ ସମୟରେ ଯେଉଁ ଅତୀତ ସ୍ମୃତି ତାଙ୍କୁ ସବୁ ଲଜ୍ଜିତ କରିଥାନ୍ତା ଆଜି ଯେପରି ସେ ସବୁକୁ ମନେ ପକାଇ ନିଜର ଏକ ପୁରୁଣା ସାର୍ଟିଫିକେଟ୍ ହିସାବରେ ପୁଣି ନଷ୍ଟ ହୋଇଯିବା ଡରରେ ମନେ ମନେ ଫ୍ରେମ ବାନ୍ଧିବା ଆରମ୍ଭ କରି ଦେଇଥିଲେ ।

ଶ୍ରୀକାନ୍ତ କିନ୍ତୁ ସବୁ ଚୁପ୍ ହୋଇ ଶୁଣୁଥିଲେ । ପଟ୍ଟନାୟକଙ୍କ ଏଡେ ବଡ ଲମ୍ବା କଥାଟା ପରେ ସୁଚିନ୍ତିତ ବକ୍ତବ୍ୟ ଦେବା ପରି ଆରମ୍ଭ କଲେ– "ମୁଁ କିନ୍ତୁ ଏଥିରେ ଆଦୌ ଏକମତ ନୁହେଁ । ତମେ ସବୁ ଭାବୁଚ ତମ ମାନଙ୍କର ଜୀବନରେ କିଛି ଗୋଟେ ନୂତନତ୍ୱ ନାହିଁ ; ଏଇଆତ ?" ସମସ୍ତେ ନିରବ ରହିଲେ–ତାଙ୍କ ମୁହଁକୁ ଅନାଇଲେ । ଟିକିଏ ରହି ଶ୍ରୀକାନ୍ତ କହିଲେ "ଜୀବନଟାରେ କିଛି ପ୍ରକାର ଆଡ୍‌ଭେଞ୍ଚର ନାଇ ବୋଲି ତମେ ମନଦୁଃଖ କରୁଛ ; କିନ୍ତୁ ମୁଁ ଭାବୁଛି, ଆଜିକାଲି ପିଲା ସବୁପ୍ରକାର ଆଡ୍‌ଭେଞ୍ଚାରରେ ଆମଠାରୁ ଆଗରେ– କିନ୍ତୁ ଏ ସବୁ କରି କଣ ଭାବୁଚ ତାଙ୍କ ଜୀବନରେ କିଛି କରି ପାରିଛନ୍ତି ବୋଲି ସେମାନେ ସନ୍ତୁଷ୍ଟ, ନା ଆମେ ତାଙ୍କ ବାପ-ମା, ପିଲାଏ ସବୁ କରି ପାରିଛନ୍ତି ବୋଲି ସନ୍ତୁଷ୍ଟ ?" କିଏ ମୁଣ୍ଡ ତଳକୁ କଲା । କିଏ ବନ୍ଧୁ ମୁହଁକୁ ଚାହିଁଲା । କିନ୍ତୁ ସମସ୍ତେ ଚୁପ ରହିଲେ । ଶ୍ରୀକାନ୍ତ ପୁଣି କହିଲେ– "ଏଇ ମୋରି କଥା ନିଅ– "

ଶ୍ରୀକାନ୍ତ ବାବୁଙ୍କ କଥା କିଏବା ନଜାଣେ । ଓଡ଼ିଶାର ପୁରପଲ୍ଲୀରେ ତାଙ୍କୁ ପ୍ରେମିକ କବି ହିସାବରେ ଯିଏ ନ ଜାଣିଚି ସେ ଓଡିଆ ସାହିତ୍ୟର କୌଣସି ପତ୍ର ପତ୍ରିକା ପଢ଼ିନି, ଏଥିରେ ସନ୍ଦେହ ନାହିଁ । ତାଙ୍କ ବିଷୟରେ ଯେ ଆଗରୁ ନଜାଣେ, ତାଙ୍କ ଲେଖା ପଢି ତାଙ୍କୁ ଯୁବକ ଛଡ଼ା ଆଉ କିଛି ମନେ କରିବାର ବାଟ ନାହିଁ । କାରଣ ତାଙ୍କ କବିତାରେ ଯୁବ ସୁଲଭ ଉଦ୍ଦାମତା ଓ ଅଫୁରନ୍ତ ଜୀବନୀ ଶକ୍ତି ହୁଏତ ଅନ୍ୟ କୌଣସି ଯୁବକଙ୍କର ଲେଖାରେ ଦେଖିବା ବିରଳ । ତାଙ୍କ ଅତୀତ ଜୀବନରେ ସେ ଯେ ଖାଲି ଲେଖାରେ ପ୍ରେମିକ ତା ନୁହେଁ, ବରଂ ବହୁ ଆଡ୍‌ଭେଞ୍ଚରର ସେ ହିରୋ ।

ସେ କହି ଚାଲିଥିଲେ– "ମୋର ଧାରଣା ହେଲା, ମୁଁ ଜୀବନରେ ଯେଉଁ ବିଭିନ୍ନ ପ୍ରକାର ସ୍ୱାଦ ପାଇଚି ଆଉ ତା ଛଡା ତମେ ଯେଉଁ ଆଡ୍‌ଭେଞ୍ଚର କଥା କହୁଚ, ସବୁ କରିଚି । ତାଠୁ ବେଶୀ କଣ କୌଣସି

ଉପନ୍ୟାସରେ କେହି ଚିନ୍ତା କରି ପାରିବ ? ଏ ନେଇ ମୁଁ ମନେ ମନେ ଗର୍ବ କରି ଠିକ୍ କଲି ମୋ ଆତ୍ମଜୀବନୀ ଲେଖି ବସିଲେ ସେ ନିଶ୍ଚୟ ସ୍ନେହ, ପ୍ରେମ, ରସରୁ ଆରମ୍ଭ କରି ଶୁଦ୍ଧ ଅଶୁଦ୍ଧ ଆଡ୍‌ଭେଞ୍ଚର ସବୁର ସମ୍ମିଶ୍ରଣରେ ଏକ ସୁନ୍ଦର ସୃଷ୍ଟି ହେବ । କିନ୍ତୁ ... " କହି ସେ ଚୁପ୍ ରହିଗଲେ ।

ସମସ୍ତେ ଉତ୍ସୁକ ନୟନରେ ଚାହିଁ ରହିଲେ କଣ କଥା– ଶ୍ରୀକାନ୍ତଙ୍କୁ କି ଚିନ୍ତା ହେଲା ; କାହିଁକି ତେବେ ସେ ଭାବିଲେ ତାଙ୍କୁ ନେଇ ଗଳ୍ପର ହିରୋ କରାଯାଇ ପାରେନା ; ବରଂ ତାର ଓଲଟାଟା ସମସ୍ତେ ଏକ ସ୍ୱତଃସିଦ୍ଧ ସତ୍ୟ ବୋଲି ଅନୁମାନ କରି ନେଇଥିଲେ ।'

"ମୋର ଏଇ ଆତ୍ମବଡିମାପୂର୍ଣ୍ଣ ଚିନ୍ତାଧାରାର ହଠାତ୍ କୌଣସି କାରଣରୁ ପରିବର୍ତ୍ତନ ହୋଇ ଯାଇଚି ।" ସମସ୍ତେ ବ୍ୟସ୍ତତାର ସହ ତାଙ୍କ ମୁହଁକୁ ଚାହିଁ ରହିଲେ । 'କଣ ହେଲା ; ଶ୍ରୀକାନ୍ତ– ପ୍ରେମିକ କବି ଶ୍ରୀକାନ୍ତଙ୍କ ଜୀବନ ପୁଣି ଶୁଷ୍କ ବୋଧ ହେଲା !'

ଶ୍ରୀକାନ୍ତ ଆରମ୍ଭ କଲେ–"ସେଦିନ ହଠାତ୍ ପଡ଼ିଲି ମୋରି ପୁଅ ପ୍ରଥମ ପ୍ରାଇଜ୍ ପାଇଚି ଦିଲ୍ଲୀ ବିଶ୍ୱବିଦ୍ୟାଳୟ ତରଫରୁ ହୋଇଥିବା ଗଳ୍ପ ପ୍ରତିଯୋଗିତାରେ । ହିନ୍ଦିରେ ଲେଖା ସେ ଗଳ୍ପକୁ ମୁଁ ଦେବି ତମେ ସମସ୍ତେ ପଢ଼ିବ ।"

ତାଙ୍କ ନୀରବତାର ସାମାନ୍ୟ ସୁବିଧା ପାଇ କେହି ଜଣେ କହି ଉଠିଲେ– "କହନ୍ତୁ କଣ ଲେଖିଥିଲା ସେ ?"

"ସତରେ ଅତିରଞ୍ଜିତ କିଛି ନଥିଲା ସେ ଗଳ୍ପରେ ଏବଂ ଲେଖାର ଶୈଳୀ ବା ଅଙ୍ଗସଜ୍ଜାକୁ ଜମା ଚିନ୍ତା ନକରି ନିଛକ ଜୀବନୀ ଲେଖିଲା ପରି ଲେଖା– ଆଉ ପ୍ରାଇଜ୍ ମିଳିଥିଲା ତାକୁ ସେ ଗଳ୍ପ ପାଇଁ । ବିଭିନ୍ନ ଗଳ୍ପ ଉପରେ ଯେଉଁ ଓ୍ୟାର୍କସପ୍, ଡ଼ିସ୍‌କସନ୍ ହୋଇଥିଲା ତା ମଧ୍ୟ ତାଙ୍କ କଲେଜ ସୋଭେନିରରେ ବାହାରିଚି ।" ଟିକିଏ ରହି ପୁଣି କହିଲେ–"ଆଉ ସେ ଗଳ୍ପର ହିରୋ ଥିଲା କିଏ ଜାଣ ?"

ଯତ୍ ସମ୍ଭବ ତେରି କରୁଥିଲେ ସେ ସମସ୍ତଙ୍କର ଉତ୍କଣ୍ଠା ବଢ଼ାଇବା' ପାଇଁ । ତା' ପରେ ଆରମ୍ଭ କଲେ "ଗତାନୁଗତିକତାହିଁ ଆଜି ମଣିଷ ସମାଜର ଏକ ମହାଙ୍କର୍ଯ୍ୟ" ଆଜି ମଣିଷ ଜୀବନରେ ଆମର ଏଡ୍‌ଭେଞ୍ଚର ସବୁ ଏକ ନିତିଦିନିଆ କଥା । ଏଣୁ ତା ଗପରେ ହିରୋ କିଏ ଜାଣ ?" ଚୁପ ରହି ଦୋଷ ଦେବାପରି ବନ୍ଧୁଙ୍କ ଆଡକୁ ଆଙ୍ଗୁଳି ଦେଖାଇ କହିଲେ "ତମେ ; ସବୁ ପ୍ରକାର ଶାରୀରିକ ବୈଶିଷ୍ଟ୍ୟ ସତ୍ତ୍ୱେ ତମେ ସୁଦର୍ଶନ ପଟ୍ଟନାୟକ– ତମ ଆନ୍‌ଇଭେଣ୍ଟଫୁଲ ଜୀବନ ଆଜିକାର ଏକ ଫିକ୍‌ସନ୍ ।" ଏଣୁ ତା ଗପରେ ତମେହିଁ ଥିଲ 'ନାୟକ' । ଏପରିକି ତା ଗପର ହିରୋର ନାମଟା ମଧ୍ୟ 'ସୁଦର୍ଶନ ପଟ୍ଟନାୟକ ।'



# କାଚଘରର ନାୟକ ନାୟିକା

କଳିଙ୍ଗ ଅଶୋକର ଡାଇନିଂ ହଲର ଅନ୍ଧାରିଆ ସାଜସଜ୍ଜା ମଧ୍ୟରୁ ଲକ୍ଷ୍ୟକଲି, ହଠାତ୍ ଗୁଡାଏ ଲୋକ ଉପଦୃଷ୍ଟି କାଚ ଦରଓ୍ୱାଜା ପାର ହୋଇ ସାମ୍ନା ହଲ ଆଡକୁ ମାଡ଼ିଯାଇଛି । ଘୁରି ଅନାଇ ଚିହ୍ନିବାକୁ ଚେଷ୍ଟାକଲି । କାରଣ ଦୃଷ୍ଟି ପକାଇଥିବା ଲୋକଗୁଡାକ ମଧ୍ୟରୁ ଯେପରି କାହାରି କାହାରି ଆଖିରେ ଏକ ପ୍ରକାର ଆସନ୍ନ ଆନନ୍ଦର ରେଖା ପରିସ୍ଫୁଟ ଥିଲା । ପ୍ରବେଶ ପଥର ନାଲି ଆଲୁଅ ମିଶା ଅନ୍ଧାରରେ ଚିହ୍ନିବାକୁ ଅସୁବିଧା ହେଲନି ଶ୍ରୀମତୀ ରଥଙ୍କୁ । ରଥଙ୍କ ସହ ମୋର ବ୍ୟାଚମେଟ୍ ହିସାବରେ ଯେତିକି ପରିଚୟ ବା ଆତ୍ମୀୟତା ନାହିଁ, ମୋ ଝିଅର ସାଙ୍ଗର ବାପା-ମା ହିସାବରେ ଦମ୍ପତିଙ୍କ ସହ ଯଥେଷ୍ଟ ପରିଚୟ ଥିଲା ଆମର । ଉଚ୍ଚ ପଦସ୍ଥ ଏବଂ ଯଶନାମଧନ୍ୟ ଡାକ୍ତର ଓ ମନସ୍ତାତ୍ତ୍ୱିକ ହିସାବରେ ସେ ବିଶେଷ ଭାବରେ ଜ୍ଞାତ ।

ଗୁଡାଏ ଲୋକ ଆଗେଇ ଗଲେ ତାଙ୍କ ଆଡକୁ ନୂତନ ବର୍ଷର ଅଭିନନ୍ଦନ ଜଣାଇବା ପାଇଁ । ଧୀରେ ଧୀରେ ଆଗେଇ ଆସୁ ଆସୁ ସେ ମୋ ଆଡକୁ ହସି ଅନେଇଲେ ଓ ଭିଡ଼ ଭିତରେ ମୋ ହାତକୁ ଚିପି ଧରିଲେ । ମୁଁ ସେ ହାତ ଚିପିବାରେ ହଠାତ୍ ଯେପରି ଏକ ନୂତନ ସନ୍ଧାନ ପାଇଲି । ସତେ ଯେପରି ସେଇ ହାତରେ ଅନୁଭୂତି ମାଧ୍ୟମରେ ତାଙ୍କ ହୃଦୟର କେତେକ ତାରର ଝଙ୍କାର ଆସି ମୋ ମନକୁ ଦୋହଲାଇ ଦେଲା ।

ସେ କିନ୍ତୁ ମୋ ଆଡକୁ ଚାହିଁ ଅନ୍ୟ ଆଡକୁ ଦେଖୁଥିଲେ । ଚାହିଁଲି ; ଶ୍ରୀମତୀଙ୍କୁ ଘେରି ଯାଇଛନ୍ତି ତାଙ୍କର ସ୍ତବକ ଦଳ । ମନେ ପଡ଼ିଗଲା କିଏ କହୁଥିଲା, ଦୁଇଟା ଖଣ୍ଡେ ଯୋଗପରେ ମିସେସ୍ ରଥ କମନ ପ୍ରପର୍ଟି । ଏମିତି ସବୁ ବାଜେ ଗିଲ୍ଲମର ଉଠେ ଟିକିଏ ସୋସିଏବଲ୍ ହେଲେ । ଏ ଭିଡ଼ ମଧ୍ୟରେ ତାଙ୍କୁ ନବବର୍ଷର ବଧାଇ ଦେବା ସମ୍ଭବ ହେଲାନି— ସେ ମାତିରହିଲେ ଗ୍ଲାସ ଆଉ ଗ୍ଲାସ ମଧ୍ୟରେ । ଘଡି ବାରଟା ପରେ ପରେ ଆମେ ଚାଲି ଆସିଥିଲୁ । କାହାରିଠାରୁ ସେପରି ବିଦାୟ ନେବାର ଆବଶ୍ୟକତା ପଡେନା ଏପରି ଫଙ୍କସନରେ । ତଥାପି ଠିକ୍ କାର କବାଟଟା ଖୋଲିବା ପୂର୍ବରୁ ଥରେ ଆଖି ବୁଲାଇ ଆଣିଲି । ଆଖି ପଡ଼ିଗଲା ଡାକ୍ତର ରଥଙ୍କ ଆଖିରେ । ମୁଁ ବିଦାୟ ଇଙ୍ଗିତ ଦେଇ ହସି ଦେଲି, କିନ୍ତୁ ସେ ହସିଲେନି । ଖାଲି ଚାହିଁଥିଲେ ।

ଗାଡି ଷ୍ଟାର୍ଟ୍ କରୁ କରୁ ମନେ ପଡ଼ିଗଲା ଆରେ ଡାକ୍ତର ରଥଙ୍କ ଏ ଯେଉଁ ଚାହାଣି ସେପରି ଚିହ୍ନା ଚିହ୍ନା—ସତେ ଯେପରି କେଉଁ ଗଭୀରତାରେ ସେ ନିମଗ୍ନ । ଏ ପାରିପାର୍ଶ୍ୱିକ ଅବସ୍ଥା ସମ୍ବନ୍ଧରେ ଏକାବାରେ ଅଚେତନ । ଗାଡିରେ ବସୁ ବସୁ ବନ୍ଦନା କହିଲା—

'କଣ ଦେହ ଭଲ ଲାଗୁନିକି ?'

'ନାଁ ଠିକ୍ ଅଛିତ' । ମୁଁ ନୀରବରେ ଗାଡି ବାହାର କରି ଆଣେଇଲି ।

'କଣ ଭାବୁଛ ?'

"ମୁଁ ଦୀର୍ଘ ନିଃଶ୍ୱାସ ପକାଇଲି, କହିଲି ଘରକୁ ଚାଲ କହିବି ।"

ବନ୍ଦନା ମୋର ଏପରି ଗମ୍ଭୀରତା ସହ ନୀରବତା ଦେଖି ମନେ ମନେ ନିଶ୍ଚୟ ଖୁବ୍ ଅସ୍ଥିର ହୋଇ ବସିଥିବ । ମୁଁ କିନ୍ତୁ ଘରେ ଲୁଗାପଟା ଖୋଲି ବିଛଣାକୁ ନଗଲା ପର୍ଯ୍ୟନ୍ତ କିଛି କହି ନଥିଲି । ବିଛଣା ପାଖକୁ ଲାଗିଆସି ମୁଣ୍ଡ ଟେକିଲା ସେ ଶୁଣିବା ପାଇଁ । ପଚାରିବା ପୂର୍ବରୁ ମୁଁ ଆରମ୍ଭ କଲି—

"ମାସେ ଖଣ୍ଡେ ତଳେ ମୁଁ ଗେଟାରୀ କ୍ଲବର ଏକ କାମ ନେଇ ଡାକ୍ତର ରଥଙ୍କ ପାଖକୁ ଯାଇଥାଏ। ଡାକ୍ତର ରଥଙ୍କ ଚେମ୍ବର ସାମ୍ନାରେ ପୋଲିସ। ଚେମ୍ବର ଭିତରକୁ ଡାକି ନେଲା ତାଙ୍କ ଆସିଷ୍ଟାଣ୍ଟ। ସେ ବସିଥିଲେ ଗୋଟେ କାଉଚର ମୁଣ୍ଡ ପାଖକୁ ଗୋଟିଏ ଚେୟାରରେ, ଆଉ କାଉଚରେ ଆଖି ଅଧା ବନ୍ଦକରି ଜଣେ ଭଦ୍ରଲୋକ ଶୋଇଥିଲେ। ଡାକ୍ତର ରଥ ଠାରି ଦେଲେ ପାଖ ଚେୟାରରେ ବସିବା ପାଇଁ। ଲୋକଟି କହି ଚାଲିଥିଲା ... ...।

'ତା ପରଠାରୁ ଆମେ ପ୍ରାୟ ପ୍ରତି ସନ୍ଧ୍ୟାରେ ସାଙ୍ଗ ହୋଇ ପାର୍କଠାରୁ ଆରମ୍ଭ କରି ରେଷ୍ଟୁରାଣ୍ଟ ସିନେମା ଯିବା ଆରମ୍ଭ କରିଦେଲୁ। ସେଇ ଅତୀତ କଲେଜ ଜୀବନରେ ପ୍ରଥମ ପାହାଚରେ ଯେଉଁ ସାମାନ୍ୟ ରଙ୍ଗ ଲାଗିଥିଲା ଆମ ଦୁଇ ଜଣଙ୍କ ମନରେ ; ଆଜି ଏତେ ବର୍ଷ ପରେ ସେ ଏକ ରଙ୍ଗୀନ ପୁଷ୍ପଭରା ଉଦ୍ୟାନ ହୋଇ ନାଚି ଯାଉଥିଲା ଆମ ଦୁଇଜଣଙ୍କ ଆଖି ଆଗରେ। ଆପଣ ଭାବିପାରିବେନି ସେ ଦିନଗୁଡ଼ିକର ଆନନ୍ଦ—ମୁଁ ଜୀବନରେ ବିବାହ ନକରିବାର ପ୍ରତିଜ୍ଞା କରି ପଞ୍ଚତିରିଶ ବର୍ଷ ବୟସରେ ହଠାତ୍ ସେଇ ନାରୀର ସାହଚର୍ଯ୍ୟ ପାଇବା ଆଶା ମଧ୍ୟ କରି ନଥିଲି। ଭାବି ନଥିଲି ସେଇ ମୋର ମନର ନାରୀ ମୋରି ଅପେକ୍ଷାରେ ଥିବ। ସତରେ ସେଇ କୈଶୋରର ପୂର୍ବରାଗ ତା ମନରେ ମଧ୍ୟ ଗଭୀର ରେଖାପାତ କରିଥିଲା ; ଯେଉଁଥିପାଇଁ ସେ ସୁଦୂର ଅହମଦାବାଦରେ ନିଜ ପିତାମାତାଙ୍କୁ ଛାଡ଼ି ଚାକିରି ଖୋଜିବା ବାହାନାରେ ମାମୁଁ ଘରକୁ ଆସି ମୋତେ ଖୋଜି ନେବ ଏ ଧାରଣା ମୋର ନଥିଲା।'

ସେ ନୀରବ ରହିବାରୁ ଡାକ୍ତର ରଥ ତାଙ୍କୁ ଆଗେଇବାକୁ କହିଲେ।

ସେ ସାମାନ୍ୟ ନିରବତା ପରେ ପୁଣି କହିଲେ—

'ଆମେ ଦୁଇ ଜଣ ଶିକ୍ଷିତ, ବୟସ କୁହାଯାଇପାରେ। ଏଣୁ ବିବାହରେ ପ୍ରତିବନ୍ଧକ କିଛି ନଥିବାର କଥା। ତାରିଖ ଠିକ୍ ହୋଇଗଲା। ଠିକ୍ ବି[illegible]ହର ଆଗ ତିନି ଚାରି ଦିନ ମୋର ତା ସହ ଦେଖା ହୋଇ ପ ରିନି [illegible]ରଣ ତାର ବାପା ମା ଓ ଅନ୍ୟ ସମସ୍ତେ ଆସି ପହଞ୍ଚିଥିଲେ।

କିନ୍ତୁ ଏଇ ତିନି ଚାରି ଦିନ ମୁଁ ଅଫିସ ଯାଇନି । ଘରେ ବସି ବସି ସେଇ କଲେଜ ଦିନର ସ୍ମୃତିରେ ନିଜକୁ ବୁଡାଇ ରଖିଥିଲି ।

ଡାକ୍ତର ପୁଣି କହିଲେ 'ହଁ– ତାପରେ ।'

"ସେଇ ସ୍ମୃତିର ଗୋଲାପକୁ ନେଇ ଖେଳୁ ଖେଳୁ ହଠାତ୍ କଣ୍ଟାଟିଏ ଆସି ଠିଆ ହେଲା । ପୁନର୍ମିଳନର ମାଧୁରୀରେ ସେଇ କଣ୍ଟା ଅନୁଭବ କରିବାକୁ ମୋତେ ହୋଇଥିଲା ବୋଧହୁଏ । ହଠାତ୍ ସବୁ ରଙ୍ଗର ଫୁଲ ମଉଳି ଆସୁଥିଲା ।"

ତାଙ୍କୁ ନିରବ ରହିବାକୁ ନଦେଇ ଡାକ୍ତର କହିଲେ "ସେଇଠୁ"

'ବିବାହ ଯଥାରୀତି ଶେଷ ହେଲା । କିନ୍ତୁ ସେଇ କଣ୍ଟା ଆସି ବାରମ୍ବାର ଛିଡ଼ା ହେଲା ମୋ ଆଗରେ । ସେ ଦିନ ଚଉଠି ରାତିରେ ... '

ସେ ରହିଗଲେ ସେତିକିରେ, ଆଉ ଆମେ ତାଙ୍କ ଆଡକୁ ଚାହିଁବା ବେଳକୁ ସେ ଆଖି ଖୋଲିଚନ୍ତି । ଏ ପର୍ଯ୍ୟନ୍ତ ଆଖି ବନ୍ଦ ଥିଲା । ମୁଁ ଡାକ୍ତର ରଥଙ୍କ ମୁହଁକୁ ଚାହିଁଲି । ତାଙ୍କ ଆଖିରେ ଏକ ନୂତନ ବେଦନା, ବୋଧହୁଏ ସହାନୁଭୂତି । ଡାକ୍ତର କହିଲେ–

'ହଁ, ରାତିର ?

ପୁଣି ସେ କହିବାକୁ ଲାଗିଲେ । କିନ୍ତୁ ବର୍ତ୍ତମାନ ତାଙ୍କ ଗଳାର ଶିରା ଗୁଡ଼ାକ ଟାଣି ହୋଇ ଯାଇଥିଲା ; ମୁହଁର ସମସ୍ତ ମାଂସପେଶୀ ଫୁଲି ଉଠିଥିଲା ।

'ହଁ ସେ ରାତିର ପ୍ରଥମ ମୋର ପ୍ରଶ୍ନ ହେଲା–

'ସରୋଜ କଣ କରୁଚି ?

ଡାକ୍ତର କହିଲେ 'ହଁ– ସେଇଠୁ'

'ଏ ଚାରି ମାସ ବୁଲାବୁଲିରେ ମୋ ମନରେ ଯେଉଁ ରଙ୍ଗ ଫୁଟିଥିଲା ଏଇ ଚାରିଟି ଦିନରେ ହଠାତ୍ କଣ୍ଟକିତ ହୋଇ ଉଠିଲା । ଏଇ ମୁହୂର୍ତ୍ତରେ ମଧ୍ୟ ମୁଁ କାହିଁକି ନିଜକୁ ଅଟକାଇ ପାରିଲି ନାହିଁ । ସେ କିଛି ଜବାବ୍ ଦେଇନି । ତାର ମୁଖ ମଣ୍ଡଳରେ ଫୁଟି ଉଠୁଥିବା ଆନନ୍ଦର ଜ୍ୟୋତି ହଠାତ୍ ନିଷ୍ପ୍ରଭ ହୋଇ ଆସିଥିଲା । ଏଇ—ଏଇ ନିଷ୍ପ୍ରଭତା ଆଣିଦେଲା ମୋ ମନରେ ସନ୍ଦେହ— ( ସେ ଇତି ମଧ୍ୟରେ ଖୁବ୍ ଉତ୍ତେଜିତ ହୋଇ ଉଠିଥିଲେ )— ମୁଁ ଧରି ପକାଇଲି ତାର ବେକ ।'

ସେ ଉଠି ବସିଲେ ।

ବର୍ତ୍ତମାନ ସେ ବୁଲିପଡ଼ି ଡାକ୍ତରଙ୍କ ଆଡକୁ ଚାହିଁ କହିଲେ—

'ନା ମୁଁ ତାକୁ ବେକ ଚିପିବା ବା ମାରିଦେବା ଉଦ୍ଦେଶ୍ୟରେ ଧରିନି, ବିଶ୍ୱାସ କରନ୍ତୁ ଡାକ୍ତର ରଥ । ମୁଁ ଦେଖୁଥିଲି ତାର ବେକରେ ସରୋଜର ହାତର ସେଇ ଦାଗ ବର୍ତ୍ତମାନ ସୁଦ୍ଧା ଅଛିକି ନା ? ବିଶ୍ୱାସ କରନ୍ତୁ ।'

ସେ ଡାକ୍ତରଙ୍କ ଆଡ଼କୁ ଝୁଙ୍କି ପଡ଼ିଥିଲେ ଏପରି ଭାବରେ, ସତରେ ଯେପରି ଡାକ୍ତରଙ୍କ ବିଶ୍ୱାସ କରିବାଟା ବର୍ତ୍ତମାନ ତାଙ୍କ ଜୀବନର ତରାଜୁର ବାଲାନ୍ସ ଓଲଟାଇ ଦେବ । ଡାକ୍ତର ନୀରବ ଥିଲେ । ଟିକିଏ ପରେ ପଚାରିଲେ ?

'ସରୋଜ କିଏ ?'

ଗୋଟିଏ ଲମ୍ବ ନିଃଶ୍ୱାସ ଛାଡ଼ି ଭଦ୍ରଲୋକ ପୁଣି ଆରମ୍ଭ କଲେ ... ...

'ସେମାନେ ସାଙ୍ଗ ହୋଇ ପଢୁଥିଲେ । ମୋ ସାନଭଉଣୀ ମଧ୍ୟ ସେମାନଙ୍କ ସହ ପଢୁଥିଲା । ତାରି ମାଧ୍ୟମରେ ମୋର ପରିଚୟ ଓ ଅନୁରାଗ । କିନ୍ତୁ ସରୋଜ ପାଇଁ ମୋ ସାନ ଭଉଣୀ କାନ୍ଦୁଥିଲା ଦିନେ— ବାରମ୍ବାର ପଚାରି ମଧ୍ୟ କିଛି କହୁନଥିଲା । କିନ୍ତୁ ବହୁଦିନ ପରେ ତାଠାରୁ କଥା ଆଦାୟ କରିଥିଲି । ଦୁଇଜଣଙ୍କୁ ସେ ଦେଖିଥିଲା କାନ୍ଧରେ ହାତରଖି ବଥା ହେଉଥିଲେ ।'

ଏତିକି କହି ସେ ଟିକିଏ ନିରବ ରହିଲେ । ପୁଣି କହିଲେ ସବୁ ଉତ୍ତେଜନାର ଉଛା ପକାଇ— "ସରେଜର ସେଇ ହାତର ଦାଗ ମୁଁ ଖୋଜୁଥିଲି ତା ବେକରେ ।"

ଡାକ୍ତର ଉଠି ଛିଡ଼ା ହେଲେ । ପୋଲିସ ସବ୍‌ଇନସ୍‌ପେକ୍ଟର ଆସି ନେଇଗଲେ ଭଦ୍ରଲୋକଙ୍କୁ ବାହାରକୁ । ଡାକ୍ତର ସେଇ ନିରବ ଦୃଷ୍ଟିରେ ଦ୍ୱାର ଆଡ଼କୁ ଚାହିଁ ରହିଥିଲେ । ମୁଁ ତାଙ୍କ ଦୃଷ୍ଟିରେ ଏକ ବିଷଣ୍ଣତା ଓ ହତାଶା ଉପଲବ୍ଧି କରୁଥିଲି ।' ଏତିକି କହି ମୁଁ ଚୁପ ରହିଲି ।

ବନ୍ଦନା କହିଲା 'ସେଠୁ, ତା ସହ ଆଜିକାର କଣ ସମ୍ପର୍କ ?'

'କିନ୍ତୁ ଆଜି ଡାକ୍ତରଙ୍କ ସେଇ ଦୃଷ୍ଟି ମୁଁ ପୁଣି ଦେଖିଲି ହୋଟେଲରେ ।'



# ନୀଡର ନାମ ଘର

ପ୍ରିୟ ବନ୍ଧୁ ସୁରେନ୍ଦ୍ର,

ହଠାତ୍ ଏତେ ଦିନ ପରେ ପୁଣି ଦେଖା ହେବ ମୁଁ ଆଶା କରି ନଥିଲି । ସମୟର ସ୍ରୋତରେ ମୁଁ ଚାକିରି ନେଇ ଓଡ଼ିଶା ବାହାରେ, ଆଉ ତମେ ତମର ସେଇ ପୁରୁଣା ଆଦର୍ଶ ଆଉ ଜିଦ ନେଇ ଗାଁ ଜମିଜମାରେ ବ୍ୟସ୍ତ । ଏଇ ଦୁଇ ପରସ୍ପର ବିପରିତମୁଖୀ ପଥରେ ପୁଣି ଯେ ହଠାତ୍ ତମକୁ ଦେଖିବି, ଖାଲି ସେତିକି ନୁହେଁ, ତମ ସହ ଦିଟା ଦିନ କଟାଇ ମନ ଖୋଲି ସେଇ ଆଗପରି ଯୁକ୍ତି କରିବି ଏଇ ଆଶା ନହେବା ସ୍ୱାଭାବିକ—ନାଁ କଣ କହୁଚ ?

ସତରେ ସେଦିନ ଶେଷ ମୁହୂର୍ତ୍ତରେ ବିଦେଶୀ ସାହାଯ୍ୟ ପାଇଁ ସେଇ ଓ୍ୱାର୍ଲ୍ଡ ବେଙ୍କ ଦଳକୁ ନେଇ ମୋତେ ହଠାତ୍ ଯିବାକୁ ନପଡ଼େ, ତମ ସହ ଦେଖା ନହୁଏ । ବହୁ ଅସୁବିଧା ସତ୍ତ୍ୱେ ମୁଁ ବାହାରି ଥିଲି । ଭାବିଥିଲି ଓଡ଼ିଶା ସରକାରଙ୍କୁ ଧରାଇ ଦେଇ ମୁଁ ଗୋଟେ ଦିନ ପରେ ଚାଲି ଆସିବି । କିନ୍ତୁ ଯେତେବେଳେ ପ୍ରୋଗ୍ରାମ ଫାଇନାଲଇଜ୍ ହେଲା ଚାଷୀଙ୍କ ଫାର୍ମ ଦେଖା ଲିଷ୍ଟରେ ତମ ନାମଟା ଦେଖି ମୁଁ ନିଶ୍ଚିତ ହୋଇଗଲି ଯେ ଇଏ ସେଇ ମୋର ବାଲ୍ୟବନ୍ଧୁ । ଆଉ ଦେଖ, ଗୋଟିଏ ଦିନକୁ ପ୍ରୋଗ୍ରାମ ବଢାଇ ମୁଁ ରହିଗଲି ପାଞ୍ଚ ଦିନ ।

ଆଶ୍ଚର୍ଯ୍ୟର କଥା, ତମେ ପ୍ରାୟ ବଦଳିନ କିଛି । ସେଇ କଲେଜ ଦିନର ଜିଦ୍ ତମର ଯାଇନି । ଯେତେ ଦୂର ମୋର ମନେହୁଏ ଅନ୍ୟ ସମସ୍ତ ବିଷୟ ଭିତରେ ତମର ସେଇ ବିଶେଷ ଯୁକ୍ତି 'ମଣିଷ ପ୍ରକୃତିର ସନ୍ତାନ, ତାର ପ୍ରକୃତ ଶାନ୍ତି ପ୍ରକୃତି କୋଳରେ' ସବୁଠାରୁ ବେଶୀ ମୋର ମନେପଡେ । ତା ଅପେକ୍ଷା ତମେ ବିବାହ ବା ପରିବାର ବିଷୟରେ ଯେଉଁ ଯୁକ୍ତି କର ତାକୁ ବେଶୀ ମୋର ମନେ ପଡେ, କାରଣ ମୁଁ ଭବୁଥିଲି ତମେ ମତେ ଯାହା କୁହ ନିଜେ ସତରେ କଣ ସେଇଆ କରି ପାରିବ, ଭବୁଥିଲି ଖାଲି ଯୁକ୍ତି ଛଳରେ କହିବୁଲ । ବରଂ ମୁଁ କହିବି ଏହି ଯୁକ୍ତି ତମକୁ ସବୁ କ୍ଷେତ୍ରରେ ବିଶେଷତା ଆଣିଦେଇଥିଲା, ଯଦିବା ଅନ୍ୟ କେହି କେହି ତୁମକୁ କହିପାରନ୍ତି "ହାସ୍ୟାସ୍ପଦର ପାତ୍ର" ବା ଜିଦ୍‌ଖୋର । କିନ୍ତୁ ସେମାନେ ସେତେବେଳେ ଯାହା କହି ଥାଆନ୍ତୁ ବା ଭବି ଥାଆନ୍ତୁ ପଛେ ଆଜି ତମର ସେଇ ବଣ ପାହାଡ ଘେରା ପଲ୍ଲୀଜୀବନ ଦେଖି ମୁଁ ମନେ କରୁଚି ତମେ ତମ ଜିଦ ବଜାୟ ରଖିଚ ; ଏପରିକି ବର୍ତ୍ତମାନ ପ୍ରୌଢତ୍ୱର ମଧ୍ୟ ଭଗ୍ୟରେ ମଧ୍ୟ ବିବାହ ନକରି ବେଶ୍ ସ୍ୱଚ୍ଛନ୍ଦ ଜୀବନଯାପନ କରୁଚ ।

କିନ୍ତୁ କାହିଁକି ? ସେଇ ପ୍ରକୃତିର ସୌନ୍ଦର୍ଯ୍ୟଭରା ଜୀବନକୁ ତମେ ଏତେ ସ୍ନେହ କରି ପ୍ରକୃତି କୋଳରେ ଆଶ୍ରୟ ନେଇଚ, କିନ୍ତୁ ପ୍ରକୃତିର ନିୟମାବଦ୍ଧ ହୋଇ ପାରିଲନି କାହିଁକି ? ସାଥୀଟିଏ ଗ୍ରହଣ ନକରିବାର ଏପରି ଅସ୍ୱାଭବିକ ଚିନ୍ତାଧାରା କାହିଁକି ?

ସେତେବେଳେ ତମେ ଯେବେ ନଥାଅ ରୁମରେ, ବସନ୍ତ ପାଣିବାବୁ, ପ୍ରଭକର, ଆମେ ସମସ୍ତେ ତମ ବିଷୟରେ ଏଇ ଗୋଟିଏ କଥା ଗ୍ରହଣ କରି ପାରୁନା, କିନ୍ତୁ ସବୁବେଳେ ମାନସିଂହ ବାବୁ ତମକୁ ସପୋର୍ଟ କରି କହନ୍ତି–'ତମେମାନେ ଏଥିରେ ବ୍ୟସ୍ତ ହେବାର ବା ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ; କାହାରି ଜୀବନ କଣ ସେଇ ଗୋଟିଏ ଅଭବରେ ଅସମ୍ପୂର୍ଣ୍ଣ ରହିଯାଏ ?' ଆମେ ସମସ୍ତେ ଯୁକ୍ତି କରି ଆସିଥିଲୁ ସବୁଦିନେ ତାଙ୍କ ସହିତ, ଆଜି କିନ୍ତୁ ମୁଁ ତମ ଜୀବନର ପୂର୍ଣ୍ଣତା ଦେଖି ମୁଗ୍ଧ ହୋଇଚି । କାହିଁ ତମ କାମରେ, ମନରେ, ଦେହରେ ବା ଦୈନନ୍ଦିନ ଜୀବନରେ ମୁଁ

ଦେଖିଲିନି କିଛି ଅସମ୍ପୂର୍ଣ୍ଣତା, ବରଂ ନଜାଣି ଥିଲେ ବିଶ୍ୱାସ କରି ହେବନି ତମେ ତମର ସେଇ ସୁନ୍ଦର 'ସଂସାର ଗଢିଚ କୌଣସି ନାରୀର ବିନା ସାହଚର୍ଯ୍ୟରେ ।

ସତ କହିବ ସୁରେନ୍ଦ୍ର ; ହୁଏତ ତମର ବାହ୍ୟ ଜଗତ ଦେଖି ଆମେ ମୁଗ୍ଧ ଏବଂ ବାହ୍ୟ ଜଗତ ଦେଖାଇ ତମେ ପ୍ରମାଣ କରି ପାରିଚ ଯାହା ତମେ ପ୍ରଚାର କରିଚ, କିନ୍ତୁ କେବେହେଲେ ସେ ପ୍ରକୃତିର ବସନ୍ତରେ, ଗୋଧୂଳୀଲଗ୍ନରେ, ପର୍ବତତଳର ସେଇ ବଣ୍ୟ ଉପତ୍ୟକାର ଝର ଝର ନିର୍ଝରିତ ନଦୀତଟରେ ଚକୁଆ ଚକୋଇର ବିରହ କ୍ରନ୍ଦନ ଆଣିନାହିଁ ତମ ମନରେ କମ୍ପନ ? ରତ୍ରୀର ଗଭୀରତା ସଙ୍ଗେ ସଙ୍ଗେ ମଣିଷର ଆଦିମ କ୍ଷୁଧା ଧକ୍କା ଦେଇନି ତମର ନିଃସଙ୍ଗ ଦ୍ୱାରଦେଶରେ ?

ନାଃ, ତମକୁ ମୁଁ ଠିକ୍ ଜାଣେ, ତମେ ସାଧକ, ତମେ ଯୋଦ୍ଧା । ତମେ କୌଣସି ଦୁର୍ବଳତାକୁ ଗୋଟିଏ ମୁହୂର୍ତ୍ତ ପାଇଁ ସୁଯୋଗ ଦେଇ ନଥିବ । ସତରେ ମୁଁ ତମକୁ ବଧାଇ ଦେଉଚି । ଅନ୍ୟମାନେ ଯେ ଯାହା କହନ୍ତୁ ; ତମେ ଯେ ଜଣେ ମହାପୁରୁଷ ଏହା ମାନିନେବାକୁ ହେବ ।

ସୁନନ୍ଦା ମୋ ପାଖରେ ବସି ଏ ଚିଠିର ଧାଡ଼ି ଧାଡ଼ି ସବୁ ପଢି ଯାଉଚି । ମୁଁ ସେଠାରୁ ଆସି ଯେଉଁ କେତେଟା ଦିନ ଥିଲି ଆମ ଘରେ, ପ୍ରତି ସନ୍ଧ୍ୟାରେ ଖାଲି ତମରି କଥାହିଁ ପଡ଼େ ! ସୁନନ୍ଦା ବ୍ୟସ୍ତ, ଥରେ ତମ ଗାଁକୁ ନିଶ୍ଚୟ ଯିବ । ତା ମନରେ ସବୁଠୁ ବଡ ଆକାଂକ୍ଷା, କିଏ ଏଇ ମହାପୁରୁଷ ସୁରେନ୍ଦ୍ର ; ତାକୁ ଥରେ ନିଶ୍ଚୟ ଦର୍ଶନ କରିବାକୁ ହେବ । ଆମେ ହୁଏତ ଦିନେ ହଠାତ୍ କିଛି ଖବର ନଦେଇ ପହଞ୍ଚି ଯିବୁ । ବର୍ତ୍ତମାନ ପାଇଁ ରହୁଚି । ଇତି ॥

ତମର
ବିଜୟ

( ଦୁଇ ମାସ ପରେ )

ବନ୍ଧୁ ବିଜୟ,

ତମ ଚିଠି ପାଇଛି ।

ପ୍ରଥମ କଥା ତମେ ସୁନନ୍ଦା ଦେବୀଙ୍କୁ ଏଠାକୁ ଆଣିବ, କେବଳ ତାଙ୍କରି ପ୍ରଥମ ଆଶା ପୂରଣ କରିବା ପାଇଁ, ମାନେ ଗାଁ ଦେଖାଇବା ପାଇଁ । ଅନ୍ୟ କିଛି ପାଇଁ ନୁହେଁ । 'କାରଣ' ଶୁଣିବ ? ଶୁଣ ।

ତମେ ଠିକ୍ ଜାଣ ମୁଁ କେବେ ନାରୀ ପ୍ରତି ଦୁର୍ବଳ ନୁହେଁ ଏବଂ ସତରେ ମୋ ଏଇ ଗାର୍ହସ୍ଥ୍ୟ ଜୀବନରେ ନାରୀର ସାହଚର୍ଯ୍ୟ ଲୋଡା ପଡ଼ିନି । ସେଇ ପୁରୁଣା ଜିଦ୍‌କୁ ବଜାୟ ରଖିବା ପାଇଁ ଗୋଟାଏ ପାଗଳାମୀରେ ବିବାହ କରିନଥିଲି, ଭବିବା ଭୁଲ । ତମ ପାଖରେ ଲୁଗ୍ରଇବାର କିଛି ନାହିଁ । ମୁଁ ନପୁଂସକ ନୁହେଁ । ବହୁ ଦୁର୍ବଳ ମୁହୂର୍ତ୍ତ ମୁଁ ଅତିକ୍ରମ କରିଚି, ଠିକ୍ ଯେମିତି ସବୁ ସାଧାରଣ ମଣିଷ କରି ଆସିଚନ୍ତି ଅଜସ୍ର ଅଦମ୍ୟ ଆକାଂକ୍ଷା ବହୁ ଅପାଂକ୍ତ ଆଶା ପ୍ରତି । ତମେ ଠିକ୍ ଲେଖିଚ, ସାଧନା ବଳରେ ମୁଁ ବ୍ରହ୍ମଚାରୀ, ତମର ମନେ ଥିବ "ଶ୍ରାବଣୀ" କଥା । ତମେ ସବୁବେଳେ ତା ପାଇଁ ଓକିଲତି କରୁଥିଲ । କହୁଥିଲ ସେ ମୋ ପାଇଁ ପାଗଳୀ ହୋଇ ଯାଇଥିଲା ସେତେବେଳେ । ପରେ ସେ ଅଧ୍ୟାପିକା ଜୀବନରେ ଥରେ ଦୁଇଥର ମୋତେ ଦେଖା କରିବାକୁ ଚେଷ୍ଟା କରିଥିଲା, ମୁଁ ସହରକୁ ଯିବା ଖବର ରଖି । ଏଠାକୁ ମଧ୍ୟ ଆସିଥିଲା, କିନ୍ତୁ ମୁଁ ଶେଷରେ ତାକୁ ରୁକ୍ଷ ହୋଇ ଫେରଇ ଦେଇଥିଲି, ତାହେଲେ ଜୀବନରେ କଦାପି ମୋତେ ଆଶା ନକରି ଅନ୍ୟର ଆଶ୍ରୟ ନେଇ ପାରିବ ।

କିନ୍ତୁ ଏଇ ଦୁଇ ମାସ ଭିତରେ ସବୁ କିଛି ଓଲଟ ପାଲଟ ହୋଇ ଯାଇଚି ।

ସେଦିନ ସହରର, ମୋ ବସା ଦେଖିଥିବ । ବାହାରି ମୁଁ ରାସ୍ତାରେ ଟହଲ ମାରୁଚି । ସାମ୍ନା ପଡ଼ିଆରେ ପାଞ୍ଚ ଛଅ ବର୍ଷର ପିଲାଟିଏ ତା ବାପା ସହ ପ୍ରାୟ ଖେଳେ । ମୋର ଏଇ ପିଲାଗୁଡାଙ୍କୁ ସବୁଠାରୁ ଡର । ଦିଦିନ ଆଗରୁ ଭେଣ୍ଡା ବାପ ଓ ପୁଅର ଖେଳରେ ଦୁଇଟା

ଝୋଲକା କାଚ ଭଙ୍ଗିଚି । ସେଦିନ ସେ ପିଲାଟି ବଲଟିଏ ଧରି ଘର ଭିତରୁ ଦଉଡ଼ି ଆସି ଏକା ଏକା ଖେଳିବାକୁ ଲଗିଲ । ମୁଁ ଘୁଲିଲ ଘୁଲିଲ ହୋଇ ତା ପାଖକୁ ଗଲି । ପିଲାଟି ବଲଟି ଫିଙ୍ଗିଦେଇଚି ଘର ଉପରକୁ, ଆଣି ପାରୁନାହିଁ । ମୁଁ ହାତ ବଢାଇ ବଲଟି ଆଣି ତା ହାତକୁ ବଢାଇ ଦେଲି । ମୋ ମୁହଁକୁ ଅନାଇ ସେ ରହିଗଲ ।

ପଗ୍ଭରିଲ 'ତମେ କଣ ରନୁର ବାପା ?'

ମୁଁ ଅନେଇ ରହିଲି ତା ମୁହଁକୁ, ସତେ ଯେପରି ସେ ପଗ୍ଭରି ଯାଉଚି 'ତମେ କଣ କଣେ ବାପା ?' 'ତମେ କଣ କଣେ ବାପା ?' 'ତମେ କଣ .. । ସତେ ଯେପରି ତାର ସ୍ୱରର ଗମ୍ଭୀରତା ବଢ଼ିଗ୍ଭଲିଚି ।

ମୋତେ ନୀରବ ଦେଖି ପିଲାଟି ଦଉଡ଼ି ଗ୍ଭଲିଗଲ ବଲ ନ ନେଇ ।

ମୁଁ ସେଦିନ ସାନ ରବର ବଲଟି ନେଇ ଘରକୁ ଫେରି ଅସି ସନ୍ଧ୍ୟାବେଳେ କୁଆଡେ ଆଉ ବୁଲି ଯାଇ ପାରିଲିନି । ବଲଟି ହାତରେ ଧରି ଏପଟ ସେପଟ ହେଲି । ଟେବୁଲ ଉପରେ ଯେଉଁଠି ବଲଟି ରଖିଦେଲେ ଗଡ଼ି ଯାଉଚି, ଆଉ ଠିକ୍ ସେମିତି ମୋ ମନଟା ଅନୁଭବ କଲି ସବୁଥିରୁ ଗଡ଼ିଯାଉଛି । ଗଡିସାରା ସେଇ ଗୋଟିଏ ପ୍ରଶ୍ନ "ତମେ କଣ ରନୁର ବାପା ?"

ଆର ଦିନ ସକାଳୁ ଖବର ନେଲି ଶ୍ରାବଣୀର । ତାର ସାଧନା ଆଉ ଧୈର୍ଯ୍ୟ ମଧ୍ୟ କିଛି କମ୍ ନୁହେଁ ।

ତମେ ଦୁଇ ଜଣ କେବେ ଆସିବ ଜଣାଇଲେ ଆମେ ଷ୍ଟେସନକୁ ତୁମମାନଙ୍କୁ ଆଣିବାକୁ ଯିବୁ ! ନିଶ୍ଚୟ ଆସିବ ।

ତୁମର ବନ୍ଧୁ– 'ସୁରେନ୍ଦ୍ର'



# ତ୍ରିବାହୁ

ପୁରୁଷ-ବନ୍ଧୁ ପାଖକୁ ଏପରି ଉବୋଦୀପକ ଉକ୍ତିତ୍ୟରେ ଲମ୍ବା ଲମ୍ବା ଚିଠି ଯେ ଲେଖିହୁଏ, ମୁଁ ନିଜଆଖିରେ ନଦେଖିଥିଲେ ବିଶ୍ୱାସକରି ପାରିନଥାନ୍ତି । ଚିଠିଗୁଚ୍ଛ ଭିତରୁ ଯେଉଁ ପୁରୁଷବନ୍ଧୁଙ୍କ ସହ ମୋର ପରିଚୟ ହୁଏ, ସେ ହେଉଛନ୍ତି ରୁଦ୍ରଭାନୁ । 'ବିଜୟା'ର ଚିଠି ଭାବି ମୁଁ ପଢି ଯାଉଥିଲି, ରୁଦ୍ରଭାନୁର ଗୋଟିଏ ଚିଠି କିନ୍ତୁ । ଭାଷା, ପରିଚିତ ଓ ସମ୍ପର୍କ ନୂଆ ନୂଆ ମନେ ହେଲା । ସେଥିରେ ଯଥେଷ୍ଟ ଭାବପ୍ରବଣତା ଥିଲେବି ନାରୀସୁଲଭ ଆବେଗର ଅଭାବ ଯୋଗୁଁ ଶେଷପୃଷ୍ଠାରେ ପ୍ରେରକଙ୍କ ନାଁ ଦେଖି ବିସ୍ମିତ ହେଲି । "ରୁଦ୍ରଭାନୁ" ।

ଇଞ୍ଜିନିୟରିଂ କଲେଜରେ ସେଟା ମୋର ଦ୍ୱିତୀୟ ବର୍ଷ । ନବକିଶୋର ସହ ବନ୍ଧୁତା ଧୀରେ ଧୀରେ ଗର୍ଢ଼ି ଉଠି ଟିକିଏ ଜମିଯାଇଥାଏ ନବକିଶୋର ସହ । ତା' ଘର କେନ୍ଦୁଝର ଜିଲ୍ଲା ଆନନ୍ଦପୁରରେ, ଆଉ ମୋ ଘର ନଦୀ ସେପାଖେ ମୟୂରଭଞ୍ଜ । ଏହି ସୂତ୍ରରେ ପ୍ରଥମ ନିକଟବର୍ତ୍ତୀତାର ଅନୁଭବରୁ ବନ୍ଧୁତ୍ୱ ଜମିଯାଏ । ତଥାପି ପ୍ରାୟ ଦେଢ଼ବର୍ଷ ଲାଗେ ପରସ୍ପରକୁ ଜୀବନର ଗୋପନୀୟ ଘଟଣାପ୍ରବାହ ସଙ୍ଗେ ମିଶାଇ ଦେବାକୁ । ଏମିତି ଭାବରେ ଧୀରେ ଧୀରେ ପରସ୍ପରର ସମସ୍ତ ଚିଠିପତ୍ରାଦି ସହ ଘନିଷ୍ଠ ଭାବରେ ପରିଚିତ ହୋଇ ଉଠିଥିଲୁ ଆମେ । ଫଟୋ ସହ ସେ ଚିଠି ଗୁଡାଏ ପଢିବାକୁ ଦିଅନ୍ତି ତାଙ୍କ 'ବିଜୟା'ର, ଆଉ ମୁଁ ମଧ୍ୟ କହି

ବଳେ ଥାଗତିକା ସହ ମୋ ବନ୍ଧୁତାର ( ପ୍ରେମ ? ) ଦିନଲିପି । ବିଜୟାର ଚିଠି ସବୁ ପଢ଼ୁ ପଢ଼ୁ ମୁଁ ଅନୁଭବ କରିପାରିଥିଲି ନବକିଶୋରର ସାହିତ୍ୟାନୁରାଗ ଓ ତା' ସହ ଓଡ଼ିଆ ସାହିତ୍ୟରେ ତାର ପାରଦର୍ଶିତା । କାରଣ ସବୁ ଚିଠିରେ ବହୁ କବିଙ୍କ ପଦ୍ୟର ବିଭିନ୍ନ ଉଦ୍ଧୃତାଂଶ ସହ ତାଙ୍କ ଦୁଇଜଣଙ୍କ ଜୀବନରେ ବିଭିନ୍ନ ସାହିତ୍ୟ କୃତି ବା ସାହିତ୍ୟ କଳ୍ପନା ଆଧାରିତ ବ୍ୟକ୍ତି ବିଶେଷଙ୍କ ବିଜ୍ଞତା । 'ବିଜୟା' ମଧ୍ୟ ବୋଧହୁଏ ସାହିତ୍ୟାନୁରାଗୀ, କାରଣ ସେ ପ୍ରତ୍ୟେକ ଚିଠିର ଉତ୍ତର ଠିକ୍ ଖଣ୍ଡାଖେଳ ପରି ପଦକୁ ପଦ ଦେଇ ଉତ୍ତର ଲେଖିଛି । ବେଶ୍ ମଜା ଲାଗେ ପଢ଼ିବାକୁ ।

ବିସ୍ମିତ ହେଲି ; କାରଣ ନବକିଶୋର କେବେ ରୁଦ୍ରଭାନୁଙ୍କ କଥା ମୋତେ କହି ନଥିଲେ । ଆହୁରି ବିସ୍ମିତ ହେଲି ଯେ ଜଣେ ପୁରୁଷବନ୍ଧୁକୁ ଲେଖିଛନ୍ତି ରୁଦ୍ରଭାନୁ ପ୍ରାୟ ଦଶ ପୃଷ୍ଠାର ଚିଠି । ନବକିଶୋର ଏ ବିଷୟରେ ନିରବ ଥିବାରୁ ମୁଁ ଆଉ ଆଗକୁ ପଢିବା ପାଇଁ ଦୋଷୀ ଅନୁଭବ କଲି । କିନ୍ତୁ କୌତୁହଳ ବିବେକକୁ ଆଡେଇ ଦେଇ ଆଗେଇ ଗଲା ଚିଠିର ଶେଷ ପର୍ଯ୍ୟନ୍ତ । ଅଧିକ କିଛି ନାହିଁ । ସେଇ ଭାବପ୍ରବଣତାର ବହଳ ପ୍ରଲେପ, ନୂତନ କଲେଜ ଜୀବନର ବନ୍ଧୁତ୍ୱ ଉପରେ । ନବକିଶୋର କିଛି ଗୋଟିଏ କବିତା ଲେଖିଥିଲେ ନିଶ୍ଚୟ ତା' ପାଖକୁ, କାରଣ ରୁଦ୍ରଭାନୁ ଉଦ୍ଧୃତାଂଶର ବିଭିନ୍ନ ଅଂଶର ଅର୍ଥ ବିଶ୍ଳେଷଣ କରି ଜୀବନର ପ୍ରତ୍ୟେକ ସ୍ତରରେ ଉଦାହରଣ ଦେଇ ଉତ୍ତର ଦେଇଛନ୍ତି, ଆଉ ଶେଷକୁ କବି ରବୀନ୍ଦ୍ରଙ୍କୁ ଉଦ୍ଧୃତ କରି ଲେଖିଛନ୍ତି—

"ଆମାର ଜୀବନ ପାତ୍ର ଉଚ୍ଛଲିୟା
 ମାଧୁରୀ କରେଛ ଦାନ
ତୁମି ଜାନୋ ନାଇଁ ତୁମି ଜାନୋ ନାଇଁ
 ତାର ମୂଲ୍ୟେର ପରିମାନ ।"

ଏହି ପଦଟି ମୁଁ ଦୁଇ ତିନି ଥର ପଢ଼ି ଅନୁଭବ କଲି ପରସ୍ପର ପ୍ରତି ପରସ୍ପରର ବନ୍ଧୁତାର ପ୍ରଗାଢ଼ତା ।

ଆଉ ଗୋଟିଏ କଥା ହଠାତ୍ ମୋ ମନରେ ଆଘାତ କଲା ଯେ ରୁଦ୍ରଭାନୁଙ୍କ ଚିଠିର କୌଣସି ବାକ୍ୟରୁ କାହିଁ "ବିଜୟା"ର ସନ୍ଧାନ ପାଇଲିନି । ମୁଁ ଟିକେ ମନେ ମନେ ଅନୁସନ୍ଧିତ୍ସୁ ହେଲି ଓ ନବକିଶୋରଙ୍କ ପ୍ରତି ଜାତ ହେଲା ହଠାତ୍ ଟିକିଏ ରାଗ । କାହିଁକି ମୋ ଠାରୁ ରୁଦ୍ରଭାନୁଙ୍କୁ ଦୂରରେ ଓ ରୁଦ୍ରଭାନୁ ଠାରୁ ବିଜୟାକୁ ଦୂରରେ, ଏ କି ପ୍ରହେଳିକା ! ମନରେ ସାମାନ୍ୟ ଆଘାତ ପାଇଲି– ପୁଣି ସାନ୍ତ୍ୱନା ଦେଲି ନିଜକୁ ; ମୋର ଆନ୍ତରିକତା ହୁଏତ ଏତେ ବେଶୀ ନୁହେଁ ଯେ, ମୁଁ ଭାବପ୍ରବଣ ହେବି । ମନରେ ଟିକିଏ ଯାହା ଖୁଆ ଅନୁଭବ କଲି । ଆଉ ଅପେକ୍ଷା କଲି କେବେ ସେ ନିଜେ ସତକଥାଟା କହିବେ ।

ପରୀକ୍ଷା ପରେ ପରେ ଚାକିରି ଜୀବନର ଆରମ୍ଭ ହୁଏ । ଚେଷ୍ଟା କରି ମୁଁ ନିଜର ପୋଷ୍ଟିଂ କରାଇଥିଲି ବୁର୍ଲାରେ । କାରଣ ପୁରୁଣା ବନ୍ଧୁ ଆଉ ପାଞ୍ଚବର୍ଷର ଆତ୍ମୀୟତାଭରା ଏଇ ଛୋଟ ଛାତ୍ର– ସହରଟିକୁ ହଠାତ୍ ଛାଡ଼ି ଯିବାକୁ ଇଚ୍ଛା ଦେଉ ନଥିଲା । ନବକିଶୋର କିନ୍ତୁ ଚେଷ୍ଟା କରି ଚାଲି ଯାଇଥିଲେ ଭୁବନେଶ୍ୱର, ଯେଉଁଠି ତାଙ୍କ ପ୍ରିୟତମା 'ବିଜୟା' ସହ ପ୍ରତ୍ୟେକ ଦିନ ଦେଖା ହୋଇ ପାରିବ । ଆମ ଦୁଇଜଣଙ୍କ ଭିତରେ ଚିଠିପତ୍ରର ଆଦାନ ପ୍ରଦାନ ପୁଣି ଆରମ୍ଭ ହୁଏ ସରକାରୀ କାମର ତାଡନାରେ । ନିଜର କଣ ଗୋଟାଏ ସାର୍ଟିଫିକେଟ ପାଇଁ ନବକିଶୋର ଲେଖିଥିଲେ କଲେଜ ଅଫିସରୁ ଚେଷ୍ଟା କରି ପଠାଇବାକୁ । ସେ ସୂତ୍ରରେ ଉତ୍ତର ଦେବା ବେଳକୁ "ବିଜୟା"ର ପ୍ରଶ୍ନ ସ୍ୱାଭାବିକ । ଆଉ ତାର ଉତ୍ତର ଦେବାକୁ ଯାଇ ସେ ତାଙ୍କ ପାଞ୍ଚ ବର୍ଷ ସ୍ୱପ୍ନର ସାର୍ଥକତା ଆଉ ବେଶୀଦିନ ନୁହେଁ ବୋଲି ଯେବେ ଲେଖିଲେ ମୁଁ ମନେ ମନେ ଖୁସି ହୋଇ ତାଙ୍କୁ ବଧାଇ ଜଣାଇଥିଲି ।

ତା ପରେ ଦୁଇ ଚାରି ବର୍ଷ ବିତି ଯାଇଛି । ଚାକିରି ଜୀବନରେ ମୋର ଯେବେ ପୋଷ୍ଟିଂ ହୁଏ ବ୍ରହ୍ମପୁରରେ, ମୁଁ ହଠାତ୍ ପାଏଁ ଗୋଟିଏ ଚିଠି ନବକିଶୋର ଠାରୁ । ଜଣେ ବନ୍ଧୁଙ୍କ ବିବାହ ଉଦ୍ଦେଶ୍ୟରେ ସେ ଆସିବେ ଅମୁକ ତାରିଖରେ । ଗାଡ଼ି ଖଣ୍ଡେ ଯୋଗାଡ କରିବାକୁ ହେବ, କାରଣ ବରଯାତ୍ରୀ ଯିବେ ବ୍ରହ୍ମପୁରଠାରୁ ପ୍ରାୟ ତିରିଶ କିଲୋମିଟର

ଭିତରକୁ 'ଚିକିଟୀ' । କନ୍ୟାଘର ନିଜ ଗାଁରେ ବାହାଘର କରିବେ ବୋଲି ଜିଦ୍‌ଧରି ବସିଛନ୍ତି ।

ମୋ ପକ୍ଷରେ ଗାଡ଼ି ଯୋଗାଡ଼ କରିବାକୁ କିଛି ଅସୁବିଧା ହେଇନି ; କିନ୍ତୁ ଯେଉଁ ଦିନ ସେ ଆସିବା କଥା ମୁଁ ଚିଠି ପାଇଲି ; ସେ ନିଜେ ବର ସହ ସିଧା ଚିକିଟୀ ଗଲେ, ଆଉ ମୋ ଉପରେ ଦାୟିତ୍ୱ ଦେଇଥିଲେ ବ୍ରହ୍ମପୁରରେ ସେ ଦେଇଥିବା ଲିଷ୍ଟ ମୁତାବକ କେତେଜଣଙ୍କୁ ନେଇ ସନ୍ଧ୍ୟା ସୁଦ୍ଧା ଚିକିଟୀ ଡାକ ବଙ୍ଗଳାରେ ପହଞ୍ଚିବାକୁ । ସେ ଦେଇଥିବା ନାଁଗୁଡ଼ାକ ମଧ୍ୟରେ ମୋର ଅତି ପରିଚିତ ଜଣେ ଦୁଇଜଣ ବନ୍ଧୁ ମଧ୍ୟ ଥିଲେ, ଆଉ ମୁଁ ମଧ୍ୟ ତାଙ୍କ ପାଖରୁ ବନ୍ଧୁତ୍ୱର ଦାବି ସହ ଆସିଥିବା ଅନୁରୋଧ ପାଇ ଆନନ୍ଦ ଅନୁଭବ କରି ଚିକିଟୀକୁ ବରଯାତ୍ରୀ ବାହାରିବାର ବ୍ୟବସ୍ଥା କଲି ।

ଏଠୁ ସେଠୁ ଗୋଟିକ ପରେ ଗୋଟିଏ ବନ୍ଧୁଙ୍କୁ ଗାଡ଼ିରେ ଉଠାଇ ନେଇ ଆମେ ଚିକିଟୀ ପହଞ୍ଚିବା ବେଳକୁ ପ୍ରାୟ ଆଠଟା ବାଜି ଯାଇଥିଲା । ଆମେ ପହଞ୍ଚିବା ବେଳକୁ ବର ବଙ୍ଗଳାରୁ ବାହାରି ଅଧାରାସ୍ତାରେ, ଏଣୁ ଆମେ ତା' ପଛ ଧରିଲୁ ।

ବର୍ତ୍ତମାନ ମୁଁ ବନ୍ଧୁମାନଙ୍କ ମଧ୍ୟରୁ ଖବର ସଂଗ୍ରହ କରିନେଲି ବରଟି କିଏ । କି ଆଶ୍ଚର୍ଯ୍ୟ ! ମୋତେ ମଜା ଲାଗିଲା ଯେ ବର ସେଇ ଆମର ପତ୍ର-ପରିଚିତ ବନ୍ଧୁ "ରୁଦ୍ରଭାନୁ" । ବାଃ, ମଜା ହେବ ନବକିଶୋର ସହ ଦେଖା ହେଲେ । କିନ୍ତୁ ସମୟ ମିଳିଲା ନାହିଁ ବସି କଥାବାର୍ତ୍ତା ହେବା ପାଇଁ । ସେ ନିଜେ ଯେପରି ବରକର୍ତ୍ତା, ସବୁଥିରେ ବ୍ୟସ୍ତ । ବିବାହ ଶେଷହୋଇ ଯେତେବେଳେ ବରକନ୍ୟାଙ୍କ ଫଟୋ ଉଠାହୁଏ ମୁଁ ଆଗେଇ ଆସି କନ୍ୟା ମୁହଁକୁ ପ୍ରଥମଥର ପାଇଁ ଚାହିଁ ଦେଖି ସ୍ତମ୍ଭୀଭୂତ ହୋଇ ରହିଗଲି । ପୂର୍ବରୁ ଖାଲି ଫଟୋ ଦେଖିଥିଲେହେଁ ଚିହ୍ନିବାକୁ ଆଉ ବାକିରହିଲାନି ଯେ, ସେ 'ବିଜୟା' ।

ମୁଁ ଚାହିଁ ରହିଲି ନବକିଶୋରଙ୍କ ଆବେଗବିହୀନ ମୁହଁକୁ ।

# ରକ୍ତ ମାଂସର ଧ୍ୱନି

ଅଜିତ ପଟ୍ଟନାୟକ ସିଗାରେଟ୍ ଲଗାଇ ପରପୃଷ୍ଠା ଖୋଲିଲେ । ପଢିବା ପୂର୍ବରୁ ପୃଷ୍ଠାର ଆରମ୍ଭ ଓ ଶେଷ ଆଡକୁ ଏକ ବିହଙ୍ଗାବଲୋକନ କରି ଉପରକୁ ମୁହଁ ଟେକି ଧୂଆଁ ଛାଡୁ ଛାଡୁ ଭାବୁଥିଲେ – ସତରେ ଲୋକଟିର ଜୀବନ-ସଂଗ୍ରାମ ସହ ତାର ଗର୍ଭି ଅଭିଯାନର ଯେଉଁମାନେ ଶିକାର, ସମସ୍ତେ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ପ୍ରତି ପୃଷ୍ଠା ଦିନର ସମସ୍ୟା ସହ ଗର୍ଭିର ପରିବାରର ସମ୍ପର୍କ ସତରେ ଏକ ଆଧୁନିକ ସମାଜର ବିଶ୍ଳେଷଣ । ସେ ପୃଷ୍ଠାର ବିଶ୍ଳେଷଣ ସମାଜର ଉଚ୍ଚପଦସ୍ଥ ସରକାରୀ ବେସରକାରୀ କର୍ମଚାରୀ ଓ କୋଟିପତି- ବ୍ୟବସାୟୀ ଠାରୁ ଆରମ୍ଭ କରି ଶ୍ରମିକ ଦୁଃସ୍ଥ କିରଣୀ ଓ ଛୋଟିଆ ସାଇକେଲ ଦୋକାନୀ ପର୍ଯ୍ୟନ୍ତ ବିସ୍ତୃତ । ଦାଗୀର ଇତିହାସ କିଛି ଅସାଧାରଣ ନୁହେଁ । ଯାହା ସେ ଶୁଣିଛନ୍ତି ବା ପଢିଛନ୍ତି ତାର ପୋଲିସ ରିପୋର୍ଟରୁ, ସେ ଏକ ନିତିଦିନିଆ ଅଭାବ ଅସୁବିଧାର କାହାଣୀ । ଏମ୍. ଏ. ପାଶ୍ କରି ଚାକିରି ପାଇଁ ଦାନ୍ତନିକୁଟା ବା ଲାଇନରେ ଛିଡ଼ାହେବା ପଛରେ ରୋଗଗ୍ରସ୍ତ ବାପ ଏବଂ ବିପଥଗାମୀ ମା' ଆଉ ଆଖିଆଗରେ ଅଭୁକ୍ତ ଭାଇଭଉଣୀ ଟାଣିନିଏ ମଣିଷକୁ ଗୋଟିଏ ପାହାଚରୁ ତଳ ପାହାଚକୁ । ଆଶାର ଆଲୋକ ଆସି ଦେଖାଦିଏ ବୈବାହିକ ସାମାନ୍ୟ ଆର୍ଥିକ ଲାଭ–ଯୌତୁକ । ନୂତନ ଶ୍ୱଶୁର ସନ୍ଧାନ ଦେଇ ନୂଆହୋଇ ଗଢିଉଠେ ଛୋଟ ଏକ ବ୍ୟବସାୟ । କିନ୍ତୁ ପିତାଙ୍କ ମୃତ୍ୟୁରେ ସାମାଜିକ କର୍ତ୍ତବ୍ୟରେ ସୃଷ୍ଟିକରେ ପୁଣି ଅଭାବ । ସ୍ତ୍ରୀର ଗହଣା, ଆଉ କିଛି ଯୌତୁକର ଦାବି ସୃଷ୍ଟି କରେ ଭୀଷଣ ଅଶାନ୍ତି ।

ପରିଣତି ପୁଣି ସେଇ ତଳ ପାହାଚ । ଆହୁରି ଓଜନ, ଆହୁରି ତଳକୁ, ନିମ୍ନଗାମୀ ମଣିଷକୁ ତାପରେ ସାମନ୍ୟ ଓଜନ ମଧ୍ୟ ଟାଣିନିଏ ଆହୁରି ତଳ ପାହାଚକୁ । ଶାନ୍ତି-ଅଶାନ୍ତି ସମାନ ହୁଏ । ପାହାଚରୁ ପାହାଚ ଡେଇଁବା ହୁଏ ନିଶା ଏବଂ ଶେଷରେ ଗୋଡ଼ ଭଙ୍ଗି ପୋଲିସ ରଖେ ଇତିବୃତ୍ତି । ଇୟେ ହୁଏତ ପ୍ରାୟ ଉଣା ଅଧିକେ ସବୁ ଦାଗୀର ଇତିହାସର ଏକ ସାଧାରଣ ଘଛଦପଟ ଗଳ୍ପ ।

କିନ୍ତୁ ଲୋକଟିର ଭାଷା ଏବଂ ଚିନ୍ତାଧାର, ଅଜିତ ପଟ୍ଟନାୟକଙ୍କୁ କରେ ଭବପ୍ରବଣ । ପୋଲିସ ଜୀବନରେ ସମାଜର ବିଭିନ୍ନ ଶ୍ରେଣୀର, ବିଭିନ୍ନ ଅବସ୍ଥାର ଓ ବିଭିନ୍ନ ବୟସର ବ୍ୟକ୍ତିବିଶେଷର କରୁଣ ଇତିହାସ ତାଙ୍କ ରେକର୍ଡ଼ ଭିତରେ ସାଇତା । ସେଇ କାରୁଣ୍ୟନ ଓଜନଦାର ଇତିହାସରେ କେତେ ଯେ ଅଫୁଟା ଫୁଲର ସୁଗନ୍ଧ ଲୁଚି ଯାଇଛି, କେତେ ଯେ ପ୍ରତିଭା ମଉଳି ଯାଇଛି ଏଇମିତି ।

ଡ଼ାଇରିର ପୃଷ୍ଠାକୁ ମୁଣ୍ଡ ନୁଆଁଇଲେ ସେ ।

"ଝରକା ତଳଟା ବେଶ ପରିଷ୍କାର । ଚକା ପକାଇ ବସିବାରେ କିଛି ଅସୁବିଧା ନାହିଁ । ସାମ୍ନାରେ ହେନା ଗଛଟା ଏଇ କେତେଦିନ ପୂର୍ବରୁ ବୋଧହୁଏ କାଟିଂ ହୋଇଚି । ବେଶ ଆଡ଼ୁଆଳ କରିଚି । ଭୟର କିଛି କାରଣ ନାହିଁ ।

ଡେରି ହେଲାଣି–ତଥାପି କଥାବାର୍ତ୍ତା ଗ୍ଲୁଲିଛି ପଛ ବାରନ୍ଦାରେ– କଣ ସଂପ୍ତେ ଏତେ ଡେରିରେ ଶୁଅନ୍ତି ।

ନା ବାବୁ ଆସିନାହାନ୍ତି ଏ ପର୍ଯ୍ୟନ୍ତ । ହଠାତ୍ ମାଙ୍କର ଚିତ୍କାର– "ଯାଓ ଯାଓ ଶୋଇବ ଯାଓ ସବୁ । ଆଜି ବାପାଙ୍କର ମିଟିଂରୁ ଫେରିବା ଜଣା ପଡୁଛି ବହୁତ୍ ଡେରି ହେବ ।"

ଛୋଟ ଝିଅଟିଏ କାନ୍ଦି ଉଠିଲା "ମା ! ବାପା କହିଥିଲେ ମୋ ଜନ୍ମଦିନରେ ବଡ଼ିଆ ପ୍ରେଜେଣ୍ଟ ଆଣି ଦେବେ–ଆଉ କେତେବେଳେ ଦେବେ ?"

ମା' ବୁଝାଇ ଦେଲେ "ଯା ମା, ଆଜିତ ବାପାଙ୍କ ଏମିତି କାମ ପଡ଼ିଲା ; କାଲି ନିଶ୍ଚୟ ଆଣି ଦେବେନି ?"

କାନ୍ଦି କାନ୍ଦି ପିଲଟି ଶୋଇଗଲା ବୋଧହୁଏ । କିଛି ସମୟ ପରେ କଣ ଗୁଣୁ ଗୁଣୁ ଗୁଂଜନ । ପୁଅ, ମାଙ୍କୁ ବୁଝାଇବାରେ ବ୍ୟସ୍ତ ।

"କାନ୍ଦିଲେ କଣ ହେବ ମା କହିଲ, ଆମେ କଣ ଜାଣିନୁ ।"

"ଆଜି ବି ସେମିତି କେଉଁଠି ପାର୍ଟି ଚାଲିଥିବ ବାପାଙ୍କର । ତୁ ବରଂ ଶୋଇପଡ । ରୀନା ସାରା ଦିନ ଅପେକ୍ଷା କରିଚି ।"

କାନ୍ଦ କାନ୍ଦ ସ୍ୱରରେ ମା କଣ କହିଲେ କିଛି ଠିକ୍ ବୁଝାଗଲାନି । ପୁଅ କିନ୍ତୁ ପୁଣି ଆରମ୍ଭ କଲା "ସେଦିନ କଥା ମନେ ନାହିଁ ? ଆସିଲେତ ଆସିଲେ ସେ ଅଗରୱାଲ ଘର ବହୂକୁ ନେଇଆସି ଯେଉଁ କାଣ୍ଡ କଲେ, କଣ ଭବିଚୁ ଆମେ କିଛି ଜାଣିନୁ ?"

ମା ଚିତ୍କାର କରି ଉଠିଲେ–"ବନ୍ଦକର, ତୁ ଶୋଇବୁ ଯା ।" ନିଜେ କାନ୍ଦି କାନ୍ଦି ଉଠି ଆସିଲେ ଇଆଡେ । ଶୋଇବା ଘରକୁ । ବିଛଣାରେ ଗଡ଼ି ପଡ଼ିଲେ ବୋଧହୁଏ ।

ପୁଅର ବି ସୋର ଶବ୍ଦ ନାହିଁ । ଶୋଇଗଲା ବୋଧହୁଏ । ଡେରି ହେଇଣି ବହୁତ । ଡେରି ହେଲେ ଆଜି ସବୁ ଗଣ୍ଡଗୋଳ ହୋଇଯିବ । କାଲି ପୋଲିସବାଇଙ୍କ ମାସିକିଆ ପାଳି । ନ ଦେଲେ ପୁଣି ହଇରଣ ହିରକତ । ମାଲ୍ ପୁଣି ଖଲାସ ହେଲେ ପାଉଣା ଦିଆହେବ, ନଦେଲେ ସୁନା ଗହଣାରୁ ଗୋଟେ ଉଠାଇ ନେବେ । ବିଛଣାଟା ଝରକା ପାଖରେ, କିନ୍ତୁ ଚକିଆ ସବୁ ଆର ଆଡକୁ ସେ ପାଖକୁ ମୁଣ୍ଡ ଦେଇ ଶୋଇଚନ୍ତି । ଏଣୁ ଭିତରକୁ ପଶିବାକୁ ପଡ଼ିବ । ମାସଟା ପ୍ରାୟ ଫେଲ ମାରିଚି କହିଲେ ଚଳେ–ଗୁଜରଣ ମେଣ୍ଟ ଚି ଖାଲି । ଆଜି ନିହାତି ଜରୁରୀ । ଏଣୁ ବାଛିବାଛି ସପ୍ଲାଇ ସେକ୍ରେଟାରୀ ଘର ବାଛିନେବାକୁ ପଡ଼ିଚି । ଟିକେ ଜୋର୍‌ସୋରରେ ଧରପଗଡ଼ ହେବ ନିଶ୍ଚୟ ।

ଆହୁରି ଡେରି । ନା, ପ୍ରାୟ ଦୁଇଟା ପାଖାପାଖି ହେଲାଣି । ବାବୁ ଫେରିବା ପରେ ପୁଣି ପାଟି, କାନ୍ଦ, ଖୋସାମତି ପର୍ବ ସରିଲେ ଯାଇ କାମ । ଶୋଇବା ବେଳକୁ ତିନି ପାରେଇ ଗଲେ ଆଜିକା କାମ ହେବନି । ଆଉ ଅଧଘଣ୍ଟାଏ ଲାଗି ଗ୍ଲି ଯିବାକଥା । ଥରେ ମୁଣ୍ଡ ଟେକି ଝରକା ଦେଇ ଭିତରକୁ ନଜର କରି, ଚମକ୍ ଆସିଗଲା ।

କାନ୍ଦି କାନ୍ଦି କର୍ତ୍ତୀ ଆସି ଝରକା ଆଡକୁ ମୁଣ୍ଡ କରି ଗଡ଼ି ଯାଇଛନ୍ତି ବିଛଣା ଉପରେ । ଏଇ ସୁଯୋଗ । ବାହାରେ ଗସ୍ତାର ଦୁଇ ପାଖ ଅନ୍ଧକାର । ଗାଡ଼ି ଘାଡ଼ି ଆସିବା ଜଣା ପଡୁନି ।

ବାରନ୍ଦା ଆଲୁଅରେ ଦେଖାଯାଉଚି, ବେକରେ ବେଶ୍ ମୋଟା ହାର, ଦୁଇଟା ବି ହୋଇପାରେ–ଚକ୍ ଚକ୍ କରୁଚି । କାନରେବି ବେଶ୍ ଓଜନଦାର ହୀର କି କଣ ଚକ୍ ଚକ୍ କରୁଚି । ନିଶ୍ଚୟ ଦାମିକା ଜିନିଷ । ନାଁ କାନଟା ଛିଡ଼ିଯିବ । ମନେ ପଡେ, ସୁରଭୀ ବାହା ବେଳେ ବାପଘରୁ ଆଣିଥିବା ଶେଷ କାନ ରିଙ୍ଗଟା ବଜାରକୁ ନେବା ପାଇଁ ଭିଡ଼ି ନେବା ବେଳେ ସେଇ ଯେଉଁ କାନ ବଡଲି ଛିଡ଼ି ଯାଇଥିଲା, ଯେତେ ସୁନ୍ଦର କାନ ଫୁଲଟେ ହେଲେବି ଏବେ ପିନ୍ଧି ନ ପାରିବାର ସୁରଭୀର ସେ ଯେଉଁ କ୍ଷୋଭ । ନା ଯେତେ ଧନ ହେଲେବି ବିଗ୍ଲରୀ ସ୍ୱାମୀ ସ୍ନେହରୁ ବଞ୍ଚିତା, ଗହଣା ସ୍ତ୍ରୀମାନଙ୍କର ଏକ ପ୍ରଲୋଭନ । ବେକର ଚେନଟା ଟାଣିନେଲେ ନିହାତି ହେଲେ ଗଳାରେ ଘା ଟିକେ ହେବ । ହାତ ବଢାଇ ଟାଣି ନେବାରେ ବିଶେଷ କିଛି ଅସୁବିଧା ନାହିଁ । ନିଜ ଦୁଃଖର ଡେଉକାଟି ହାତ ବଢ଼ାଇ ଦେଲି, କଣ ଘଟିଲା ଅନୁଭବ କରି ସେ ଚିତ୍କାର କଲା ବେଳକୁ ବେଶ୍ କିଛିଟା ଦୂରରେ ପଞ୍ଚ ଲଇନ୍‌ରେ ଯେଉଁ ପୋଲ ଉପରେ ନାଇଟ୍ ଡ୍ୟୁଟିରେ କନେଷ୍ଟବଲ ଦୁଇଜଣ ଶୋଇଥିଲେ ତାଙ୍କରି ପାଖରେ ପହଞ୍ଚି ଯାଇଥିଲି ।

"ଭଗବାନ କ୍ଷମାକର ।"

ରଜତ ପଟ୍ଟନାୟକ ଏକ ନିଶ୍ୱାସରେ ପଢ଼ିଗଲେ । ଇଏ ତାଇରି ପୃଷ୍ଠା ନୁହେଁ, ଅନୁଭୂତିର ବର୍ଣ୍ଣନା । ସିଗାରେଟଟା ଜଳି ଯାଇଥିଲା । ଆଉ ପୃଷ୍ଠା ଓଲଟାଇବା ପୂର୍ବରୁ ନୂଆ ସିଗାରେଟ ଲଗାଇ ଗ୍ଲହିଁଲେ ସିଲିଂ ଆଡ଼କୁ ।

# ଜୟ ପରାଜୟ

ଡାଇରୀର ଯେଉଁ ପୃଷ୍ଠା ଦୁଇଟି ପଢିବାକୁ ମୋତେ ସେଦିନ ସନ୍ଧ୍ୟାରେ ବଢ଼ାଇ ଦେଇ, ଟିକିଏ ବାଗେଇ ଲେଖିବାକୁ ରଞ୍ଜନ ଅନୁରୋଧ କରିଥିଲା, ସେହିଟା ଅଧିକା ବାଗେଇ ନ ଲେଖି, ମୁଁ ତାକୁ ଆପଣ ମାନଙ୍କୁ ସିଧା ଶୁଣାଇବା ପୂର୍ବରୁ ରଞ୍ଜନ ବିଷୟରେ କିଛି କହିବାକୁ ଚାହେଁ ।

ରଞ୍ଜନ-ଚୌଧୁରୀ, ଯେଉଁ ସହରରେ ଚାକିରି କରି ଆସିଛନ୍ତି ପ୍ରାୟ ସେ ସହରରେ ତାଙ୍କୁ ସମସ୍ତେ ଚିହ୍ନିଛନ୍ତି । ଚାକିରିଟା ନିଶ୍ଚୟ ତାଙ୍କର ସଭକ ବା ସମାଜରେ ଯିବାର ଏକ ସୋପାନ । ଭାରତ ସରକାରଙ୍କ କେଉଁ କର୍ପୋରେସନରେ ମୋଟା ଦରମାର କାମ ନଥିବା ଚାକିରୀ । ନୂଆ ଗାଡ଼ି ଆଉ ନୂଆ ନୂଆ ବାନ୍ଧବୀ ହେଉଛି ତାଙ୍କ ବିଷୟରେ ସମସ୍ତଙ୍କ ଠାରେ ପରିଚୟ– "ରଞ୍ଜନ ଚୌଧୁରୀଙ୍କୁ ଜାଣିନ ? ସବୁବେଳେ ନୂଆ ନୂଆ ଗାଡ଼ିରେ ନୂଆ ନୂଆ ବାନ୍ଧବୀ ନେଇ, ଡେଙ୍ଗା ହୋଇ ବେଶ୍ ସୁଦର୍ଶନ ଯେଉଁ ଯୁବକ ଦେଖିବ ସେ ହେଲା ରଞ୍ଜନ ଚୌଧୁରୀ ।" ସତରେ ସହରରେ ତାଙ୍କ ପରିଚିତ ହୁଏତ ଖୁବ୍ କମ୍ ଥିବେ, କିନ୍ତୁ ସେ ସମସ୍ତଙ୍କର ଜଣା । ଯାହାକୁ କହନ୍ତି ସେ ଜଣେ ମହା ହିରୋ ।

ତାଙ୍କରି କମ୍ପାନୀରେ ଚାକିରି କରୁଥିଲା ମାନବେନ୍ଦ୍ର ଏବଂ ତାର ମାରଫତରେ ମୋର ପରିଚୟ ହୁଏ ରଞ୍ଜନ ସହ, ଧୀରେ ଧୀରେ ଗଭୀର ହୁଏ ବନ୍ଧୁତ୍ୱ । ମାନବେନ୍ଦ୍ର କହିଥିବା ରଞ୍ଜନର ସମସ୍ତ ହିରୋଗିରି ମୁଁ ଗୋଟି ଗୋଟି ଆଲୋଚନା କରି ନେଇଛନ୍ତି ରଞ୍ଜନ ସହ ।

ତା ପକ୍ଷରେ ସେ ଗୁଡ଼ା କିନ୍ତୁ ଇତିହାସ । ତାର ଜବାବ ହେଲା– "ଜୀବନରେ କୌଣସି ବନ୍ଧୁତ୍ୱକୁ ସେ ବନ୍ଧନର ଏକ ଡୋରି ବୋଲି ଭାବିନି । ତା'ମାନେ ନୁହେଁ ଯେ ସେ ନାରୀକୁ ଖେଳନା ବୋଲି ଭାବିଚି । ବନ୍ଧୁତ୍ୱର ଆଦାନ ପ୍ରଦାନରେ ଯାହାର ଯାହା ଦାବି, ଯାହା'କୁ ଯାହା ଦେବାରେ ଉଭୟର ବାଧାର ଅଭାବ ନାହିଁ, ସେଥିରେ ସେ କେବେ କୁଣ୍ଠା କରିନି କିମ୍ବା କାହାରିକୁ ଆଘାତ ଦେଇନି । ଏଣୁ ଏ କ୍ଷେତ୍ରରେ ତା ମନରେ ନ୍ୟାୟ ଅନ୍ୟାୟ ବା ପାପ ପୁଣ୍ୟର ସ୍ଥାନ ନାହିଁ ।"

ସେ କହିବା ଭାଷାରେ– "ଅବଶ୍ୟ ମୋର ଭୁଲ ହୋଇପାରେ । ମୁଁ ଚାନ୍‌ସ ନେଇଚି ଓ ଚାନ୍‌ସ ଦେଇଚି । କିନ୍ତୁ ମନେରଖ, ମୁଁ କେବେ କାହାର ବନ୍ଧୁତ୍ୱକୁ ଜବରଦସ୍ତି ଦଖଲ କରିନି କିମ୍ବା କାହାରି ବୟସ, ଅବସ୍ଥା, ଅଜ୍ଞାନତା ଇତ୍ୟାଦିର ସୁଯୋଗ ଦେଇନି ।"

ରଞ୍ଜନ ଚୌଧୁରୀର ରୂପ, ଗଠନ ଓ କଥାବାର୍ତ୍ତାର ଭାବଭଙ୍ଗୀ ସବୁ ପୌରୁଷମୟ । ଏଣୁ ସେ ଖାଲି ସେଇ ଭଗବାନଦତ୍ତ ଗୁଣଟିକୁ ଅନ୍ୟର ସେବାରେ ଉତ୍ସର୍ଗ କରିଚି ବୋଲି ମୁଁ ଯୁକ୍ତି କରେ ମାନବେନ୍ଦ୍ର ସହ ।

ଇଏ ଗଲା ତା ସହ ପରିଚୟର ପ୍ରଥମ ପର୍ବ ।

ବର୍ତ୍ତମାନ ଡାଇରୀର ଆଉ କିଛିଟା ପୃଷ୍ଠା ଆଗେଇ ଯାଇ ମୁଁ ଦେଖୁଚି ତା ଜୀବନରେ ନୂଆ ମୋଡ଼ ଆସିଚି ରୀତା ଦେବୀଙ୍କ ସ୍ତ୍ରୀ ରୂପରେ ଆବିର୍ଭାବ ସହ, ଯାହାଙ୍କୁ ପରିଚୟ କରାଇ ଦେବା ନିହାତି ଜରୁରୀ ମନେ କରୁଚି । ଖାଲି ଗୋଟିଏ ଦିନର କଥାବାର୍ତ୍ତା ଉଦ୍ଧାର କଲେ ଆପଣମାନେ ଠିକ ଜାଣିପାରିବେ ଅବସ୍ଥାଟା । ପଡ଼ିଶା ଘର ଆଉଟ ହାଉସରେ ଯେଉଁ ପିଅନଟି ଜଗେ ତାର ସ୍ତ୍ରୀ ଏବେ ଗାଁରୁ ଆସିଚି । ରଞ୍ଜନକୁ ଥଟ୍ଟା କରନ୍ତି ଏବେ ସବୁଦିନେ ରୀତା ।

'ହେ, ସେ ପଡ଼ିଶାଘରକୁ ନଜର କଲଣି ! ଖୁବ୍ ସୁନ୍ଦରୀ ଯେ ବହୁଟା ।'

ହୁଁ, କହି ରଞ୍ଜନ ଖବରକାଗଜ ଗଡାଏ ।

କାରଣ, ଖାଲି ରୀତା' ପରି ସୁନ୍ଦରୀ ସ୍ତ୍ରୀ ପାଇଁ ନୁହେଁ, ସତରେ ରଞ୍ଜନର ପିପାସା ମେଣ୍ଟି ଯାଇଚି । ସତରେ ସେ ଏବେ ଅତୀତ ଜୀବନର ଆଉ ପୁନରବୃତ୍ତି ଚାହେଁନା । ରୀତା ମଧ୍ୟ ଏହା ଜାଣନ୍ତି । ଏଣୁ ପଦେ ପଦେ ମଜା କରିବା ତାଙ୍କର ଅଭ୍ୟାସଗତ । ସେ ଭଲ କରି ଜାଣନ୍ତି ବର୍ତ୍ତମାନ ରଞ୍ଜନ ସ୍ୱର୍ଗ ଅପ୍ସରୀର ପ୍ରେମ ନିବେଦନ ମଧ୍ୟ ପ୍ରତ୍ୟାଖ୍ୟାନ କରିବ ।

ସେଦିନ କିନ୍ତୁ ବ୍ୟସ୍ତ ହୋଇ ରୀତା ଆସି କହିଲେ, 'ମୋତେ ଜମା ଭଲ ଲାଗୁନି ।'

'କଣ' ? ଅନ୍ୟମନସ୍କ ହୋଇ କହିଲା ରଞ୍ଜନ ।

'ସେ ଶାନ୍ତି'

'କିଏ ?'

'ସେଇମ, ପଡ଼ିଶା ଘରର ବହୂ ।'

ରଞ୍ଜନ ମୁଣ୍ଡ ନୁଆଁଇଲା ବହି ଉପରକୁ, ପଚାରିଲା 'କଣ ହେଲକି ?'

'ସେ ଦୁଇଦିନ ହେଲା ସକାଳୁ ଆସି, ଆମର ବାସନ ମାଜୁଛି, ଘର ସଫା କରୁଚି ।'

"ବେଶ ଭଲ ହେଲା, ତମ ଚାକରାଣୀ ପଳେଇଲା ବୋଲି କମ୍ପ୍ଲେନ୍ କରୁଥିଲ ; ମିଳିଗଲା ଗୋଟେ ।"

"ନାଇଁ ଯେ ଏମିତି ଉପରେ ପଡ଼ି.........

ଟିକିଏ ରହି, "ତ ଙ୍କର ତ କିଛି ଅଭାବ ନାହିଁ ।"

ରଞ୍ଜନର ଉତ୍ତର ଦେବାର କିଛି ନଥିଲା ।

ରଞ୍ଜନ ବହି ବନ୍ଦ କରୁ କରୁ ହସିଦେଇ ଲୁଗା ବଦଳେଇବାକୁ ବାହାରିଲା । କ୍ଲବ ଯିବା ଟାଇମ ହୋଇଗଲା ।

ପ୍ରାୟ ମାସକ ପରର ଡାଇରୀର ଉଦ୍ଧୃତାଂଶ—

୧୫-୫-୮୨ ଶନିବାର ୩୧ ବୈଶାଖ ୧୩୮୯ ।

ବଡ଼ ବୋର ଲାଗିଲାଣି ୧୦ଟା ଦିନରେ । ମନେପଡ଼େ ପ୍ରେମିକ କବି ମାନସିଂଙ୍କର 'ପଶ୍ଚିମ ପଥିକ'ର ପ୍ରଥମ ଧାଡ଼ି, 'ପୁରୁଷ ପାଇଁ ନାରୀ ଯେଉଁ ନୀଡ଼ ରଚନା କରେ ତାରି ନାମ ଘର ।' ସତରେ ନାରୀର ନୀଡ଼ହିଁ ପୁରୁଷର ଘର ।

ଆଜି ଚିଠି, ପାଞ୍ଚ ଦିନ ଆହୁରି ଡେରି । କାହିଁ କେବେତ ଜଣକ ପାଇଁ ଏତେ ଅଭାବ ଅନୁଭବ କରିନି ?

୧୬-୫-୮୨ ରବିବାର ୧ ଜ୍ୟେଷ୍ଠ ୧୩୮୯ ।

ଆଜି ବୋଧହୁଏ ଜୀବନରେ ପ୍ରଥମେ ନିଜକୁ 'ଲଜ୍ଜିତ' ଅନୁଭବ କଲି । ଘଟଣାଟା ଲିପିବଦ୍ଧ ହୋଇ ରହିବା ନିହାତି ଦରକାର । ବିଶେଷ କରି ରୀତା ପାଇଁ । ସବୁ ଜୟର ସ୍ୱାଦ ସେ ଚାଖିଛି ।

ସକାଳୁ ଚା ଜଳଖିଆ ଦେଇ ନବୀନ ଗଲା ଗାଁକୁ, ସନ୍ଧ୍ୟାକୁ ଫେରିବ । କ୍ଲବରେ ଲଞ୍ଚ ଖାଇନେବି ଏଣୁ ବ୍ୟସ୍ତ ହେବାର କିଛି ନାହିଁ ।

ଆଜି ଗାଡ଼ି ଧୋଇବା ପାଳି । ରୀତା ଥିଲେ ଫ୍ରିଜ୍, ଟିଭି, ବଗେଇ ବଗେଇ ସବୁ । ଖାଲି ଗାଡ଼ିଟା ଧୋଇଦେବା ଆଜି । ଅଳସୁଆ ଲାଗୁଥିଲା । ଆଉ କପେ ଚା ହୁଅନ୍ତା କି । ନା ସେ ଆଶା ନଥିଲା । ବରଂ ଶୀଘ୍ର କାମ ସାରି ଢାପନୀ ଘରେ ଯାଇ ବସିଲେ ଦୁଇ ଚାରିଟା ପୁରୁଣା ଫିଲ୍ମିର ଗୀତ ଶୁଣି ତାକୁ ଧରି କ୍ଲବ ବାହାରିବି । ଏହା ଭାବି ଉଠି ପଡ଼ିଲି ।

ନଅଟା ବେଳେବି ଗରମ କମ ନୁହେଁ । ଗାଡ଼ିଟା ପୋର୍ଟିକୋକୁ ଆଣି ହାଫ୍‌ପେଣ୍ଟଟା ପିନ୍ଧି ନେଲି । ବଗିଚା କୁଣ୍ଡରୁ ବାଲଟିଏ ପାଣି ନେଇ ଥୋଇ ଦେଇ ସିଧା ହେଲା ବେଳକୁ ନଜର ପଡ଼ିଲା ଡ୍ରଇଂ ରୁମ ଝରକାରୁ କେ ଜଣେ ଅନେଇଛି । ପାଣି ବାଲ୍‌ଟି ରଖି ଦେଇ ଝରକା ପାଖକୁ ଆଗେଇ ଯାଇ ଭିତରକୁ ଦେଖିଲି ନୂଆ ଚାକରାଣୀ ଘର ପୋଛୁଛି ।

ଚାରି ଛଅ ବାଲ୍‌ଟି ପାଣି ନେଇ ଧୋଇ ସାରି ପୋଛିବା ପୂର୍ବରୁ ଡ୍ୟାସ୍‌ବୋର୍ଡରୁ ସିଗାରେଟ ପ୍ୟାକେଟଟା ଆଣି ଗୋଟେ ଲଗାଇ ପାହାଚ

ଉପରେ ବସି ଧୂଆଁ ଛାଡୁଛାଡୁ ଗାଡ଼ିର କାଚ ଉପରେ ଶୋଇବା ଘର ଝରକା ସେପଟଟାର ରିଫ୍ଲେକ୍‌ସନ୍ ଦେଖିଲି 'ସେ ଚାହିଁଚି' ! ଗାଡ଼ିର ମଡ଼ଗାର୍ଡ ଉପରେ ଥିବା ଛୋଟ ମିରରଟିକୁ ବୁଲାଇ ଦେଇ ନଜର କଲି– ବୟସ ବେଶୀ ହେଲେ ୨୦ ରୁ ୨୧, ବେଶ୍ ଗୋରା, ସୁନ୍ଦର ସ୍ୱାସ୍ଥ୍ୟ, ବେଶ ସୁଶ୍ରୀ । କିନ୍ତୁ ମନେହେଲା ସେ ଯେପରି ମୋତେଇ ଚାହିଁଛି । ହଠାତ୍ ତାର ଆଖି ପଡ଼ିଗଲା ମିରର ଉପରେ । ମୁହଁ ବୁଲାଇ ନେଇ ଛଳନା କରି ସଫା କରିବାକୁ ଲାଗିଲି ମିରରଟା । ସେ ହସିଦେଇ ବୁଲିଗଲା । ତାର ଖୋଲା ଗୋରା ତକ୍ ତକ୍ ପିଠି ଦେଖାଇ ଛିଡ଼ା ହୋଇ କଣ ଗୋଟେ ଝାଡ଼ିବାକୁ ଲାଗିଲା ।

ସବୁ ଅଣ୍ଟାରୁ ନିତମ୍ବର ପରିସର କିଛିବାଟା ବଢ଼ିଯିବା ପରେ ଶାଢୀ ଆରମ୍ଭ ଏବଂ ସେଇ ସରୁ ଅଣ୍ଟାରୁ ଉପରକୁ କାନ୍ଧ ଆଉ ବେକ ପର୍ଯ୍ୟନ୍ତ ଏକ ଶିଳ୍ପୀର କଳ୍ପନା । ସାମାନ୍ୟ କଡ଼େଇ ଯାଇ ଛୋଟ ଛୋଟ ପଥର ମୂର୍ତ୍ତି ଗୁଡ଼ାକ ହାତରେ ଆଣି ଝରକା ପାଖରେ ଝାଡ଼ିବାକୁ ଯାଇ ସେ ବାହୁ ସନ୍ଧିରେ ବକ୍ଷର ଯଥେଷ୍ଟ ଭାଗ ଦେଖାଇ କାମରେ ବ୍ୟସ୍ତ ଥିବାର ଛଳନା କରି ଚାଲିଥିଲା । ମୁଁ ଟିକିଏ ଖେଳିବାର ସୁଯୋଗ ଦେବାକୁ ଭାବିଲି ।

ପାଣି ବାଲଟିଏ ଆଣିବାକୁ କହି ମୁଁ ଏମିତି ଜାଗାରେ ଠିଆ ହେଲି, ସେ ଯେପରି ଘରୁ ବାହାରି କୁଣ୍ଡ ପାଖକୁ ଯିବା ବେଳକୁ ମୋର ଅତି ପାଖ ଦେଇ ଯିବ । ସେ ଠିକ୍ ଆସିଲା ମୋରି ଅତି ପାଖରେ, ପ୍ରାୟ ମୋ ଦେହରେ ତା' ଲୁଗା ଘଷି । ପାଣି ପାଖକୁ ଆଗେଇ ଯାଇ, ମୋ ଆଡ଼କୁ ପଛ କରି, କୁଣ୍ଡରୁ ପାଣି ନଉଠାଇ ବୁଲି ପଡ଼ି ସାମ୍ନା ଆଡ଼କୁ ଯାଇ ଯେତେବେଳେ ନଇଁ ପଡ଼ିଲା ; ମୁଁ ନିର୍ଲଜ ଭଳି ଚାହିଁ ରହିଲି । ଆଉ ସେ ଯେତେବେଳେ ଆଖିଟେକି ମୋ ଆଖିରେ ଆଖି ମିଶାଇ ନେଲା, ଛଳନା କରି ମୁଁ ମୁହଁ ବୁଲାଇ ନ ନେଇ ଆଖି ଆଉ ଓଠରେ ନିମନ୍ତ୍ରଣର ହସ ହସି ଦେଇ ଘର ଭିତରକୁ ଚାଲିଗଲି ।

ବହୁଦିନ ପରେ । ବହୁଦିନ ପରେ ; କିନ୍ତୁ ଆଜିର ଉତ୍ତାପ ଅନ୍ୟ ରକମର । ଦେହରେ ହଠାତ୍ ଏକ କମ୍ପନ ଅନୁଭବ କଲି । ଆଜି ଯେପରି ମୁଁ ଖେଳୁଆଡ ନୁହେଁ, ମୁଁ ଜଣେ ଟ୍ରେନି ।

ସିଗାରେଟ ଲଗାଇ ଅପେକ୍ଷା କଲି । ଜୀବନର ପ୍ରଥମ, ଦ୍ୱିତୀୟ, ତୃତୀୟ, ଏବଂ ତା'ପରର ଯେତେ ଏମିତି ଖେଳ ସମସ୍ତ ଘଟଣା ଆସି ମନରେ ଉଙ୍କି ମାରିଗଲା । ହଠାତ୍ ହାତରେ ଯେବେ ସିଗାରେଟ ନିଆଁ ଆସି ଲାଗେ ଅନୁଭବ କଲି "କାହିଁ ଆସିଲନି ତ !"

ବାରଣ୍ଡାକୁ ଆସି ଦେଖିଲି କେହି ନାହିଁ । ପଗଳୟର ଗାଡି ନେଇ ମୁଁ କ୍ଲବ ବାହାରିଗଲି । ତା ପରର କଥା । ସେ ଆଉ ତାପରେ କାମ କରିବାକୁ ବି ଆସିନି । ଏଇଠି ଡାଇରି ଶେଷ । ବାକିତକ ରଞ୍ଜନ କହିବା କଥା ।

ରୀତା ଫେରି ଆସିଛି । ତେବେବି ସେ ଆଉ କାମ କରିବାକୁ ଆସିନି । ଯେଉଁଦିନୁ ତାକୁ ଡକାଇ ପଠାଇବା ସତ୍ତ୍ୱେ ମଧ୍ୟ ସେ ଆସିନି, ରୀତା ରାଗିଚି । "ବଡ଼ ଦିମାକତ, ଉପରେ ପଡ଼ି କାମ କରୁଥିଲା କାହିଁକି ?" ପରଦିନ ରୀତା ଯେତେବେଳେ ସକାଳୁ ଆସି ଖଟରେ ବସିପଡ଼େ ରଞ୍ଜନ ୧୬-୫-୮୨ର ଡ଼ାଇରୀ ପୃଷ୍ଠା ବାହାର କରି ତା ହାତକୁ ବଢ଼ାଇ ଦେଇଥିଲା ।



# ମରୀଚିକା

ସୁରେନ୍ଦ୍ରମୋହନ ଦାଣ୍ଡଦୁଆରୁ ଫେରି ଆସି ଭିତର ଅଗଣାରେ ପଡ଼ିଥିବା ଆଗମ ଚଉକିରେ ବସି ପଡ଼ିଲେ ସବୁଦିନର ଅଭ୍ୟାସ ନେଇ । ଏଇ ଗତ ମାସେ ଖଣ୍ଡେ ଛାଡ଼ିଦେଲେ ରିଟାୟାର କରିବା ପରେ ଗତ ବାର ବର୍ଷ ଧରି ସନ୍ଧ୍ୟାରେ ଏମିତି ପାଗ ଦେଖି ବାରନ୍ଦା, ନହେଲେ ଅଗଣାରେ ବସି ବସି ସ୍ତ୍ରୀ କରୁଣାଙ୍କ ସବୁ କଥାକୁ ସେ ଯୁକ୍ତିରେ କାଟି ଆସିଚନ୍ତି । ସ୍ତ୍ରୀଙ୍କ କଥାରେ ନପଡ଼ି ସବୁ ସେ ନିଜେ ଠିକ୍ କରୁଥିଲେ ପିଲାଙ୍କ ଭବିଷ୍ୟତ । ଆଉ ସବୁଦିନେ ସେ ଗର୍ବ କରୁଥିଲେ ତାଙ୍କରି ହାତରେ ଗଢ଼ା ସନ୍ତାନମାନଙ୍କର ଉନ୍ନତି ନେଇ । କରୁଣାମୟୀଙ୍କ ଦୀର୍ଘ ନିଃଶ୍ୱାସ ଚାପି ହୋଇ ଯାଇଥିଲା ତାଙ୍କ ଆତ୍ମତୃପ୍ତିର ହସ ମଧ୍ୟରେ । ସୁରେନ୍ଦ୍ର ମୋହନ ଚାକିରି ଜୀବନରେ କେବଳ ପିଲାଏ ପାଠ ପଢ଼ିବାବେଳେ ସେ ସାମାନ୍ୟ ଅଭାବ ଅସୁବିଧା ଅନୁଭବ କରିଥିଲେ । ତଥାପି ସ୍ତ୍ରୀ କରୁଣାଙ୍କ ଆପତ୍ତି ସତ୍ତ୍ୱେ ବଡପୁଅକୁ ପଠାଇଥିଲେ ଗଜକୁମାର କଲେଜ, ରାୟପୁରକୁ । କିନ୍ତୁ ରମେନ୍ଦ୍ର ରଜାପୁଅଙ୍କ ସଙ୍ଗେ ରଜାପୁଅ ପରି ରହି, ଫେରିଆସି ଆଉ ଚଳି ପାରିଲାନି—ବମ୍ବେ ପଳାଇଗଲା କିଛି ଖବର ନଦେଇ । ଆଠବର୍ଷର ଶନିଦଶା ପରେ ଚିଠି ଆସିଲା ସୁଦୂର ଆମେରିକାରୁ । ସେଠି ସିଟିଜେନ୍‌ସିପ୍ ନେଇ ନେଇଚି ସେ । ତା ପରେ ପରେ ତାଙ୍କ ଶନିଦଶା ବୋଧେ କଟି ଯାଇଥିଲା । ରମେନ୍ଦ୍ର ପଛକୁ ଲାଇନ ଧରି ବାରମ୍ବାର ଇଞ୍ଜିନିୟରିଂ ସ୍କୁଲରେ ଫେଲ ହେଉଥିବା ହରେନ୍ଦ୍ର ଯାଇ ଇଂଜିନିଆର ହୋଇ

ଆମେରିକାରେ ରହିବା ପରେ ଆଉ ଦୁଇପୁଅଙ୍କୁ କଲେଜ ଓ ସ୍କୁଲରୁ ନେଇ ସାର ସଂସାର ବୈକୁଣ୍ଠଧାମ ଆମେରିକାର ସୁଖ ସ୍ୱାଚ୍ଛନ୍ଦ୍ୟ ମଧ୍ୟରେ ବସାଇ ଦେଇଥିଲେ ସେ । କରୁଣାମୟୀଙ୍କ ମରହଟ୍ଟୀ ଚିନ୍ତାଧାରକୁ ହସି ଉଡ଼ାଇ ଦେଇଥିଲେ । ସବୁ ପିଲାଙ୍କ ସାହାଯ୍ୟରେ ବଡ଼ ଝିଅର ବାହାଘର ବି ଧୁମ୍‌ଧାମ୍‌ରେ ହୋଇ ଯାଇଥିଲା । ବାକି ସାନ ଝିଅ ଥିଲା ସମସ୍ତଙ୍କର ଅଲିଅଳୀ । ଭାଇମାନଙ୍କର ସ୍ନେହୋପହାର ବିଦେଶୀ ଲୁଗାପଟା, କସ୍‌ମେଟିକ୍‌ସରେ ତାର ବାକ୍‌ସ ଭର୍ତ୍ତି । ଏଣୁ ଏଇ ଦେଶ-ମାଟିରେ ସେ ପୁରା ବିଦେଶୀ ହୋଇ ଯାଇଥିଲା । ବେଶଭୂଷା ଓ କଥାବାର୍ତ୍ତାରେ ସେ ଭାଇମାନଙ୍କୁ ଟପି ଯିବା ଅବସ୍ଥା ଦେଖି ସ୍ୱାମୀ ଭାଇ ସୁଚିନ୍ତିତ ଯୋଜନା କରି ତାକୁ ନେଇ ଯାଇଥିଲେ ବାକି ପାଠ ଆମେରିକାରେ ପଢ଼ାଇବା ପାଇଁ ।

ବେଶ କିଛି ଦିନ ଚାକିରିର ବାକି ସମୟ ଗୁଡାକ ଛାଡି ଫୁଲାଇ କାହାରିକୁ ଖାତିର୍ ନକରି କଟାଇ ଦେଲେ ସୁରେନ୍ଦ୍ରମୋହନ । ଆଉ ରିଟାୟାରମେଣ୍ଟ ଆଗରୁ ସୁନ୍ଦର ଘରଟିଏ ମଧ୍ୟ ତିଆରି ହୋଇ ଯାଇଥିଲା ଆମେରିକାନ୍ ଆର୍କିଟେକ୍ଟଙ୍କ ପ୍ଲାନ୍‌ରେ । ସୁରେନ୍ଦ୍ରମୋହନ ଓ କରୁଣାଙ୍କୁ ଘରଟା ପ୍ରଥମେ ପ୍ରଥମେ ଭୀଷଣ ଅସୁବିଧାଜନକ ମନେ ହେଲେବି ଆଧୁନିକ ସଭ୍ୟତାର ମାପକାଠିରେ ପଛେଇ ନଯିବାର ମାନସିକ ପ୍ରଚେଷ୍ଟାରେ ଘରଟାର ଅସୁବିଧାକୁ ସୁବିଧା ବୋଲି ଧରି ନେବାକୁ ହେଲା । ଅବଶ୍ୟ ସବୁଠୁ ବିଶେଷ ସାହାଯ୍ୟ କରିଥିଲା ଅତ୍ୟାଧୁନିକ ଗେରାଜ ଘରଠୁ ଆରମ୍ଭ କରି ଶୋଇବା ଘର ପର୍ଯ୍ୟନ୍ତ ସବୁଘରର ବିଭିନ୍ନ ଯନ୍ତ୍ରପାତି । ଏମିତିକି ତଳତାଲାରୁ ଉପରତାଲାକୁ ଯିବାକୁ ସିଡ଼ି ନ ହୋଇ ଏସ୍କାଲେଟର ଲାଗିଥିଲା । ସ୍ୱର୍ଗସୁଖ ଅନୁଭବ କରିଥିଲେ ସୁରେନ୍ଦ୍ରମୋହନ ଆଉ ସ୍ତ୍ରୀଙ୍କ ଆଡକୁ ଅନାଇ ହସିଦେଇ ନିଜ ସନ୍ତାନମାନଙ୍କ କୃତିତ୍ୱ ଯେ କେବଳ ତାଙ୍କରି ପ୍ରଚେଷ୍ଟାର ଫଳ ଏ କଥା ବାରମ୍ବାର ସୂଚାଇ ଦେଉଥିଲେ ସେ ସବୁ ମୁହୂର୍ତ୍ତରେ ।

ସବୁ ପିଲା ବାହାରେ ରହିବା ଦ୍ୱାରା ଯାହା ବା ଅଭାବ ସେ ଉପଲବ୍ଧି କରିଥାଆନ୍ତେ ବଡ ଝିଅ ସୁକନ୍ୟା କିନ୍ତୁ ସେତକ ପୂରଣ କରି ପାରିଥିଲା । ଅର୍ଥର ପ୍ରାଚୁର୍ଯ୍ୟରେ ସେ ଝିଅକୁ ବିବାହ ଦେଇ ପାରିଥିଲେ ପ୍ରସିଦ୍ଧ ଚୌଧୁରୀ ବଂଶରେ । ଚୌଧୁରୀ ବଂଶର ଐତିହ୍ୟ ଥିଲା ଆଭିଜାତ୍ୟ ପୂର୍ଣ୍ଣ । କେଉଁ ଯୁଗରୁ ତାଙ୍କର ଜମିଦାରୀ ; କେଡେ ବଡ

ତାଙ୍କ ଉଆସ । ସହରର ସେଇ କୋଡ଼ିଏ ଏକର ବଗିଚା ଭିତରେ ସୁଦୃଶ୍ୟ ଅଟ୍ଟାଳିକା ହୁଏତ ଗର୍ବ ହିସାବରେ ଠିଆ ହୋଇପାରେ, କିନ୍ତୁ ଚୌଧୁରୀ ବଂଶର ବୋହୂକୁ ଏ ଆଡ଼ମ୍ବର ବେଶୀଦିନ ଅଟକାଇ ପାରି ନଥିଲା ତାର ଚାରି କାନ୍ଥ ମଧ୍ୟରେ । ସୁକନ୍ୟା ତାର ପୁତ୍ର-କନ୍ୟା ଓ ସ୍ୱାମୀଙ୍କୁ ନେଇ ଭରି ଦେଇଥିଲା ସୁରେନ୍ଦ୍ରମୋହନଙ୍କ ସଂସାରର ଶୂନ୍ୟତା । ଯା ଭିତରେ ପୁଅ ଦୁଇଜଣ ଆମେରିକାର ବାହା ହୋଇଚନ୍ତି, ଆଉ ସ୍ତ୍ରୀମାନଙ୍କୁ ନେଇ ଭାରତକୁ ବୁଲିଆସିଲେଣି ଦୁଇଥର । ପୁଅ-ବୋହୂଙ୍କଠାରୁ ସୁଖ ନପାଇଲେବି, ସେମାନେ ସୁଖରେ ରହିଲେ ହେଲା ।

ରିଟାୟାରମେଣ୍ଟ ପରଠୁ ପିଲାଏ ଲାଗିଥିଲେ ବାବା-ମାଙ୍କୁ ଥରେ ବିଦେଶ ବୁଲାଇ ଆଣିବେ । ହେଲେ ଆଜି ଏଟା, କାଲି ସେଟା କହି ସେ ଯାଇ ପାରି ନଥିଲେ । ସେଥର ଟିକେଟ ଦୁଇଟା କରି ପଠାଇ ଦେଇଥିଲା ହରେନ୍ଦ୍ର । ତଥାପି ସେ ହଠାତ୍ ଯାଇ ପାରି ନଥିଲେ ଖାଲି ଏଇ ଘରପଣା କରୁଣାମୟୀଙ୍କ ପାଇଁ । ଏଥର କିନ୍ତୁ ଶେଷ ବେଳକୁ କରୁଣାମୟୀ ପଛାଇଗଲେ ମଧ୍ୟ ତାଙ୍କୁ ଝିଅ ପାଖରେ ଛାଡ଼ି ସେ ତିନି ମାସ ବିଦେଶ ଗସ୍ତରେ ବାହାରି ପଡ଼ିଥିଲେ ।

କିନ୍ତୁ ବେଶୀଦିନ ନରହି ସେ ଫେରି ଆସିଲେ ମାସକ ଭିତରେ । କହନ୍ତି "କିଛି ଭଲ ଲାଗିଲାନି । ଖାଇବାକୁ ଯେଉଁ କଷ୍ଟ; ସେଠି କିଛି ଖାଇ ପାରିଲେନି ସେ ।" ବନ୍ଧୁ ବାନ୍ଧବଙ୍କୁ ତାଙ୍କର ସେଇ ବେଖାତିରିଆ ଉତ୍ତର "ସବୁଆଡେ ଘେରଏ ବୁଲି ଦେଲି, ସଂସାରଟା ଘୁରିଦେଲି କହ । ଆଉ ବେଶୀ ଦିନ ରହି କଣ କରନ୍ତି ?"

ବାହାରୁ ଟିକେ ବୁଲି ଫେରିଆସି ପୁଣି ଚେୟାରରେ ଗଡି ପଡୁ ପଡୁ ସୁକନ୍ୟାର ପିଲାଙ୍କ ଚିତ୍କାର, ଆଉ ତା ଉପରେ ସେମାନଙ୍କ ପଡ଼ାପଢ଼ି ନେଇ ସୁକନ୍ୟାର ପାଟି ତୁଣ୍ଡ ଭିତରେ ସୁରେନ୍ଦ୍ରମୋହନ ଶୁଣି ପାରୁଥିଲେ କରୁଣାମୟୀଙ୍କ ଦୀର୍ଘ ନିଃଶ୍ୱାସ । ଗୋଡ ଦୁଇଟାକୁ ଟୁଲଟା ଉପରେ ଲଦି ଦେଇ ଆକାଶକୁ ଅନାଇ ହଠାତ୍ ସେ ଚିନ୍ତା କଲେ । ଏତେ ପାଟି ଓ ଚିତ୍କାର ମଧ୍ୟରେ ବି କରୁଣାମୟୀଙ୍କ ନିଃଶ୍ୱାସ ସବୁ ତାଙ୍କୁ ଠିକ୍ ଶୁଣା ଯାଉଚି । ସିଏ ନିଜେ ଯେତେବେଳେ ବସି ବସି ଲମ୍ବା ଲମ୍ବା

ଦୀର୍ଘ ନିଃଶ୍ୱାସ ଛାଡ଼ୁଛନ୍ତି, ସେତେବେଳେ ଅନୁଭବ କରୁଚନ୍ତି କରୁଣାମୟୀଙ୍କ ଲମ୍ବା ନିଃଶ୍ୱାସ ସବୁ ଆସି ମିଶି ଯାଇ ତାଙ୍କ ମନରେ ଏକ ଆର୍ତ୍ତନାଦ ସୃଷ୍ଟି କରୁଛି ।

ସ୍ୱାମୀଙ୍କ ଫେରିବା ଶବ୍ଦ ପାଇ କରୁଣାମୟୀ ପାଖରୁ ଟୁଲଟା ଟାଣି ନେଇ ବସି ପଡ଼ିଲେ । କିଛି ଦିନ ହେଲା ବିଗ୍ଭରୀ ଭରି ବ୍ୟସ୍ତ । ଧନ ଗୌରବରେ ବିଭୋର, ପ୍ରାଣପ୍ରାଚୁର୍ଯ୍ୟ ଭରା ସୁରେନ୍ଦ୍ରମୋହନ ଆମେରିକାରୁ ଫେରି ହଠାତ୍ ଗମ୍ଭୀର କାହିଁକି ? ଆସିବା ଦିନଠାରୁ ପ୍ରାୟ ବନ୍ଧୁବାନ୍ଧବ ଲାଗି ରହିଥିଲେ । ସମୁଦି ସମୁଦୁଣୀ ଆସି ତିନି ଗ୍ଭରି ଦିନ ରହିଗଲେ । ତା ପଛକୁ ସେହି ଦିନୁ ତାଙ୍କ ଗାଁରୁ ଭାଇ ବିରାଦରମାନେ ଆସି ଆଜି ସକାଳୁ ସବୁ ବିଦା ହେଲେ । ହେଲେବି ଜଣ ଭିଡ଼ କମିଚି ? ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ଅଫିସର ପୁରୁଣା କର୍ମଗ୍ଭରୀ ଓ ବନ୍ଧୁମାନଙ୍କ ଗହଳି । ଏଇ ଶେଷ ଜଣକୁ ବାହାରେ ବିଦାୟ ଦେଇପରେ କରୁଣାମୟୀ ଗତ ଆଠ ଦିନ ଭିତରେ ପ୍ରଥମ କରି ସ୍ୱାମୀଙ୍କ ପାଖରେ ଏକୁଟିଆ ବସିବାକୁ ସମୟ ପାଇଲେ ।

ସବୁଦିନ ପରି ସୁରେନ୍ଦ୍ରମୋହନ ଏବେ ହୋ ହୋ ହୋଇ ହସୁ ନଥିଲେ । ବରଂ କରୁଣାମୟୀ ଅନୁମାନ କଲେ, ଉପରକୁ ଗ୍ଭହିଁ ସ୍ୱାମୀ ତାଙ୍କର ଯେପରି ଅତି ଚିନ୍ତିତ । ତଳକୁ ମୁହଁ କରି ବସିଲେ ସେ । ତାଙ୍କର ଆଶଙ୍କା ହେଲା, ତିନି ମାସର ପ୍ରୋଗ୍ରାମ କରି ସେ ହଠାତ୍ ମାସକ ଭିତରେ ପଳାଇ ଆସିଲେ କାହିଁକି ? କେହି ତାଙ୍କୁ ଅପମାନିତ କଲାକି ? ସ୍ତ୍ରୀ ପକ୍ଷରେ ସ୍ୱାମୀଙ୍କ ଅପମାନ ଠାରୁ ବୋଧହୁଏ ବଡ଼ ଗ୍ଲାନି ନାହିଁ । ସେ ପୁଣି ମୁହଁ ଟେକି ସ୍ୱାମୀଙ୍କୁ ଗ୍ଭହିଁଲେ , ଫିକା ଜହ୍ନ ଆଲୁଅରେ ସୁରେନ୍ଦ୍ର ମୋହନଙ୍କ ଆଖିର ଧଳା ଅଂଶଟା ଚକ୍ ଚକ୍ କରୁଥିଲା ।

ହଠାତ୍ ସୁରେନ୍ଦ୍ରମୋହନ ସିଧା ହୋଇ ବସି ପଡିଲେ । ସ୍ତ୍ରୀ କରୁଣାମୟୀଙ୍କ ହାତଟା ଟାଣିନେଇ ନିଜ ଦୁଇ ହାତମୁଠାରେ ଜୋରରେ ଚିପି ଧରି ବାଷ୍ପାକୁଳ କଣ୍ଠରେ କହିବାକୁ ଆରମ୍ଭ କଲେ "ମୋର ବୋଧହୁଏ ଶନିଦଶାଟା ଏ ପର୍ଯ୍ୟନ୍ତ ଗ୍ଭଲିଚି ।" କରୁଣାମୟୀ ଉଠି ପଡି ସ୍ୱାମୀଙ୍କ ମଥାକୁ ନିଜ ଦେହରେ ଜଡାଇ ଧରିଲେ । କହିବାର କିଛି ତାଙ୍କର

ନଥିଲ । ସେ କିଛି ଗୋଟେ ଏହିପରି ଦୁଃସମ୍ବାଦ ଅପେକ୍ଷାରେ ଥିଲେ । ବିଶେଷ ବ୍ୟସ୍ତ ନହୋଇ କହିଲେ–"କଣ ହୋଇଚି କୁହ ।"

"କିଛି ହୋଇନି । ତମେ ବ୍ୟସ୍ତ ହୁଅନି । ବିଦେଶରେ ସମସ୍ତେ ଭଲ ଅଛନ୍ତି । କାହାରି ରୋଜଗାର ମାସକୁ ଦଶ ପନ୍ଦର ହଜାର ଟଙ୍କାରୁ କମ୍ ନୁହେଁ । ସମସ୍ତଙ୍କର ନିଜର ଗାଡ଼ି ଅଛି । ରମା ଆଉ ହର ନିଜର ଘର ବି କରିଛନ୍ତି ।"

କରୁଣାମୟୀ ଟିକେ ଆଶ୍ୱସ୍ତ ହୋଇ କହିଲେ–"ଆଉ ସୁମନା ?"

"ଆରମରେ ସେ'ବି ଅଛି । ଜଣେ ବନ୍ଧୁ ସହ ରହୁଚି ।" ଟିକିଏ ରହି କହିଲେ– "ପୁରୁଷ-ବନ୍ଧୁ ।"

ଅଜାଣତରେ କରୁଣାମୟୀଙ୍କ ଛାତିରୁ ଏକ ଦୀର୍ଘନିଃଶ୍ୱାସ ବାହାରି ଆସିଲ । ସୁରେନ୍ଦ୍ରମୋହନ ସେଇ ଉଷ୍ଣ ନିଃଶ୍ୱାସରେ ପୋଡ଼ି ଜଳିଗଲ ପରି ଅନୁଭବ କଲେ । ଧୈର୍ଯ୍ୟବନ୍ଧ ତାଙ୍କର ଭୁଷୁଡ଼ି ପଡ଼ିଲ । କହି ଉଠିଲେ– "ତମେ ମୋତେ କ୍ଷମାକର କରୁଣା ।" ସ୍ୱରରେ ତାଙ୍କର ଆକୁଳ ଉଚ୍ଛ୍ୱାସ । କରୁଣାମୟୀ ତାଙ୍କ ମୁହଁରେ ହାତ ରଖି କହିଲେ– "ଆର ଘରେ ବଡ଼ ଝୋଇଁ ଅଛି ଶୁଣିବ । ଇଏ କଣ କହୁଚ ତମେ ? କଣ ହୋଇଚି କୁହ ସତେ ?" ସୁରେନ୍ଦ୍ର ମୋହନ ଆଉ କୋହ ଅଟକାଇ ପାରିଲେନି । କାନ୍ଦି ଉଠି କହିଲେ– "ପୁଅମାନେ ମୋର କଣ କରନ୍ତି ଜାଣ ? ରମା ପେଟ୍ରୋଲ ଟେଙ୍କରେ ପେଟ୍ରୋଲ ପକାଏ ଆଉ ଗାଡ଼ିର କାଚ ପୋଛେ । ହର ଆଠ ଘଣ୍ଟା ୱେଲଡ଼ିଂ କରି କଳାଭୂତ ହୋଇ ବାହାରେ, ଆଉ ସାନ ଦୁଇ ଜଣ ଟ୍ରେନ ଚଳାନ୍ତି । ଝିଅ ମୋର ଗୋଟେ କଳା-ନିଗ୍ରୋର ରକ୍ଷିତା । ଏହା କହୁ କହୁ ସେ ଭେ ଭେ ହୋଇ କାନ୍ଦି ଉଠିଲେ

ଆର ଘରୁ ଧାଇଁ ଆସିଲେ ସୁକନ୍ୟା, ବଡ଼ ଝୋଇଁ ଓ ପିଲମାନଙ୍କ ସହ ପୂଜାରୀ ଠାକୁର ସମସ୍ତେ ।

□

# ଅମ୍ଳାନ ପ୍ରତିଭା

# ଅଖିଳମୋହନ ପଟ୍ଟନାୟକ

ଆଗ ରିକ୍‌ସାରେ କେହି ଜଣେ ବସିଚି, ପଛପଟୁ ଯେପରି ଚିହ୍ନା ଚିହ୍ନା ଲଗୁଛି । ସନ୍ଧ୍ୟା ହୋଇଗଲଣି । ବଡ଼ାଖୁଣ୍ଟ ତଳକୁ ଆସି ପହଞ୍ଚିଲୁ ମୁଁ ପଛ ପାଖରୁ ମଧ୍ୟ ଭଲ କରି ଚିହ୍ନି ପାରିଥିଲି ଜୀବନ ଛୋଟରକୁ । କାହିଁ ଆଜି ସେ ନିଶାର ଜୋର ନଥିଲା ପରି ମନେ ହେଉଚି । କଣ ସନ୍ଧ୍ୟା ସମୟଟା ବୋଲି ଟାଇମ ହୋଇନି ! ନା ଜୀବନ ଛୋଟର ପାଇଁ ସମୟ ଅସମୟ କିଛି ନାହିଁ । ପ୍ରେସ କାମ ସାରି ଶୀଘ୍ର ଆସିବାକୁ ହେବ, ବନ୍ଧୁ ସୁଦର୍ଶନ ଆଗ୍ରହୀ ନହେଲେ ଅପେକ୍ଷା କରି ବସି ବସି ଫେରିଯିବେ । ଜୀବନ ଛୋଟରର ରିକ୍‌ସା ଆଗରେ ଗ୍ଲୁଣ୍ଟିଚି । ମୁଁ ପଛରେ । ସବୁଦିନେ ସେଇଟା ଆଗକୁହା ଆଗଚଲ । କିନ୍ତୁ ଜୀବନ ଛୋଟର ଦିଲ୍‌ଦାର ଲୋକ । ପାଞ୍ଚ ମିନିଟ ତା ସଙ୍ଗେ କଥାବାର୍ତ୍ତା ହେଲେ ସେ ପନ୍ଦରଟା ଲୋକର ମନ କିଣି ନେବ ।

ଆରେ ଆଜିତ ରବିବାର ! କାହିଁ ଦିନସାରା ତାର କ୍ଲବରେ ଦେଖା ନଥିଲା ! ସେଦିନ କଥା ମନେ ପଡ଼ି ହସ ଲାଗିଲା ।

ଏମିତି ପ୍ରତି ରବିବାର ଖରା ବେଳଟା କ୍ଲବରେ ବିଅରଖିଆ ବନ୍ଧୁ-ମାନଙ୍କ ଆସର ଜମେ । ବିଶେଷତଃ ସେ ଯେଉଁ ଦକ୍ଷିଣମୁହାଁ ଲମ୍ବା

ବାରନ୍ଦା, ଶଗଦିନିଆ ଦକ୍ଷିଣା ପବନ ସେଠି ହୁ ହୁ ଲଗୁଥାଏ । ବସି ବସି ଦିନ ଗୋଟାଏ ବେଳେ ଲଞ୍ଚ ଅର୍ଡର ଦିଆହୁଏ, ଆଉ ଗ୍ଭରିଟା ପର୍ଯ୍ୟନ୍ତ ବସି ବସି ନାନା ଗୁଲିଗପରେ କଟେ । ସପ୍ତାହସାରା କାମରେ ବ୍ୟସ୍ତ ଥାଇ ହଠାତ୍ ବନ୍ଧୁ ଗହଣରେ ବସି ଗପ ମାରିବା କେତେ ଜଣଙ୍କର ଏକ ଅଯସ କହିଲେ ଅତ୍ୟୁକ୍ତି ହେବ ନାହିଁ । ନିତିଦିନିଆ ମୁହଁ ପ୍ରାୟ ପ୍ରତି ସପ୍ତାହରେ ଦେଖାଯାଆନ୍ତି । ସେମାନେ ସବୁ କ୍ଲବର ବଡ଼ ନାମଜାଦା ମେମ୍ବର । ଆଉ ତାଙ୍କ ସାଙ୍ଗକୁ ମଝିରେ ମଝିରେ ଗୃହିଣୀ ବା ପିଲମାନଙ୍କ ଅଶାନ୍ତିକୁ ଭ୍ରୂକ୍ଷେପ ନ କରି ଯେଉଁମାନେ ଗଡ଼ିପଡ଼ନ୍ତି ସେଇମାନେ ସତରେ ହୁଅନ୍ତି ସେ ରବିବାର ଗୁଲିଖଟିର ହିରୋ ।

ହଠାତ୍ ବହୁଦିନ ପରେ ସେଦିନ ଗଡି ପଡିଲେ ସ୍ୱନାମଧନ୍ୟ ଲେଖକ, ସୁବକ୍ତା, ଏଡ୍‌ଭୋକେଟ ଅଖିଳମୋହନ ପଟ୍ଟନାୟକ । ବେଶ, କଥାର ମୋଡ଼ ଧରିଲ 'ସାହିତ୍ୟ' । ପୁଣି ଗଳ୍ପ-ସାହିତ୍ୟ । ଅଖିଳବାବୁ ପଦେ ପଦେ ଏଠି ସେଠି ଯୋଡ଼ି ଦେଇ, ବେଶ ମଜାରେ ଦେଖିଲି, ଶୁଣି ଯାଉଚନ୍ତି ତାଙ୍କ ଲେଖା ବା ସମସାମୟିକ ଅନ୍ୟ ଲେଖକଙ୍କ ଉପରେ ମନ୍ତବ୍ୟ । କାହାରି ପାଇଁ କେଉଁଠି ଅପେକ୍ଷାରେ ବସିଥିବା ବେଳେ ଗୋଟେ ଗପର ଆଗ ବା ପଛରୁ ଗୋଟେ ଦୁଇଟା ପରିଚ୍ଛେଦ ପଢ଼ିଦେଇ ସାହିତ୍ୟ ବିଷୟରେ ଲମ୍ବା ଚର୍ଚ୍ଚା କରିବାତ ଆଜିର ପାଠକମାନଙ୍କର ତଥାକଥିତ ସାହିତ୍ୟ ସେବା ।

ବାଃ, ଅଖିଳବାବୁ କଥାରେ ମାଛ ଖେଳାଇ ନିଜର ଭବିଷ୍ୟତ ସାହିତ୍ୟ ସୃଷ୍ଟି ପାଇଁ ଖୋରାକ ସଂଗ୍ରହ କରୁଛନ୍ତି, ଏଥିରେ ସନ୍ଦେହ ନାହିଁ ।

ଖୁବ୍ ବଡ ରକମ ଏକ ବକ୍ତୃତା ଦେବା ଆରମ୍ଭ କରି ଦେଇଥାଏ ଜୀବନ ଛୋଟରା । ଟିକିଏ 'ହାଇ' ହୋଇଯାଇଚି ବୋଧହୁଏ । କାରଣ ବିଲିଆର୍ଡ଼ ଟେବୁଲ ଉପରୁ ହଠାତ୍ ଶୁଣିଲି "ଯାବେ, ଫକୀରମୋହନଙ୍କ ନାଁ ତୁ ମୋ ପାଖରେ ଧରିବୁ ?" ମୁଁ ଦ୍ୱାର ପାଖକୁ ଆଗେଇ ଯାଇ ଅନାଇ ଦେଖିଲି ଗରମାଗରମଟା କେତେ ଦୂର—ଝଗଡ଼ାର ସୀମା ଡେଇଁବାକୁ ଆଉ କେତେ ଡେରି । ନା, ଠିକ୍ ଗ୍ଭଲିଚି । ଅଖିଳବାବୁ ପୁଣି ଚିହାଇ ଦେଲେ "ହଁ ତମେ ଠିକ୍ କହୁଛ ଜୀବନ ! ଛାଡ଼ିଗଲ ରାଜକିଶୋର ରାୟଙ୍କ ଠାରେ ।"

ବେଶ୍, ପୁଣି ଚାଲିଲି ଅନର୍ଗଳ । ମୁଁ ମୁହଁ ବୁଲାଇ ନେଲି ବିଲିଆର୍ଡ୍ ଟେବୁଲକୁ, କାରଣ ଜୀବନ ଛୋଟରାକୁ ସମସ୍ତେ ଜାଣନ୍ତି ଖୁବ୍ ଭଲ ଭଦ୍ର ମଦୁଆ ହିସାବରେ । ଦିନବେଳେ ମଧ୍ୟ ଯେ କୌଣସି ଜାଗାରେ ତାର ମୁହଁରୁ ମଦ ଗନ୍ଧ ବାହାରେ । ଆଖିତଳ ଗାଲରେ ଅତିରିକ୍ତ ମଦ୍ୟପାନର ଚିହ୍ନବି ବେଶ୍ ସୁସ୍ପଷ୍ଟ । ଅବଶ୍ୟ ମଦ ଖାଇ କେଉଁଠି ଗଳି କରିବା; କେଉଁଠି ପଡ଼ିଯିବାତ ଦୂରର କଥା, ପ୍ରତ୍ୟେକ ପଦ କଥାରେ ସାଧାରଣ ଭଦ୍ରତାର ଅସାଧାରଣ ପରିପ୍ରକାଶ ଦେଖିବାକୁ ମିଳେ ତାଠାରୁ । କିନ୍ତୁ ତା' ସାଙ୍ଗକୁ ଜୁଆ, ଆଉ ଗତି ଗତି ଶିକାର, ମାନେ ପୋଚିଂ ନେଇ ତାର ଦିନ କଟେ । ଯେତେ ସବୁ କିଶୋର, ଯୁବକ ବା ପ୍ରୌଢ଼, ଆମ ଦୃଷ୍ଟିରେ ମଦୁଆ, ଜୁଆଡ଼ି, ଲୋଫର, (ଅବଶ୍ୟ ଏଇ ତଥାକଥିତ ଭଦ୍ର ସମାଜର) ସମସ୍ତେ ବୟସ ନିର୍ବିଶେଷରେ ତାର ବନ୍ଧୁ । ତା'ର ସାହିତ୍ୟ ଉପରେ ବକ୍ତୃତାର ଧୃଷ୍ଟତାକୁ ସହ୍ୟ କରିବା ଅପେକ୍ଷା ବରଂ ବିଲିଆର୍ଡ଼ ଖେଳିଲେ ଲାଭ ଅଛି । ବେଶ୍ ମଜାଦାର କ୍ଲବର ରବିବାରଟା ।

ଗବୁ ଗବୁ ପ୍ରେସ ଦୁଆରମୁହଁରେ ଆସି ରିକ୍ସା ପହଞ୍ଚି ଯାଇଛି । ଆସି ଦେଖେ ବନ୍ଧୁ ସୁଦର୍ଶନ ଆଚାର୍ଯ୍ୟ ଆସି ନାହାନ୍ତି । ପାଣିବାବୁ କହିଲେ "ସେତ ଆଜି ଆସି ପାରିବା କଥା ନୁହେଁ । ଆପଣ କଣ ଜାଣନ୍ତିନି ସେ ଆଜି ଥିବେ ସୂଚନା ଭବନରେ ? ମୁଁ ବି ବାହାରିଚି, ରିକ୍ସା ଅଟକାଇ-ଥାନ୍ତୁ ଯିବା ।"

ପୁଣି ଆସି ରିକ୍ସା ଧରି ସୂଚନା ଭବନ ଗେଟ ପାଖରେ ଓହ୍ଲାଇବା ବେଳକୁ ଡେରି ହୋଇଗଲାଣି । ପକେଟରୁ ବାହାର କରିନେଲି ନିମନ୍ତ୍ରଣ ପତ୍ର ଖଣ୍ଡିକ । ବହୁଦିନୁ ଲେଖା ଲେଖି ଛାଡ଼ିଥିଲେ ବି ହଠାତ୍ ନିମନ୍ତ୍ରଣ ପାଇ ବାହାରି ଥିଲି– କିନ୍ତୁ ଡେରି ହୋଇଗଲାଣି । ପ୍ରତ୍ୟେକ ବର୍ଷ ପରି ଏବର୍ଷର ଶ୍ରେଷ୍ଠ କ୍ଷୁଦ୍ରଗଳ୍ପର କୃତି ଲେଖକ ବା ସମୀକ୍ଷକଙ୍କୁ ସମ୍ମାନିତ କରିବା ଏ ଅନୁଷ୍ଠାନର ଲକ୍ଷ୍ୟ । ନିମନ୍ତ୍ରଣଟା ପାଇବାର ମୂଳ କାରଣ ହେଲେ ବାବୁ ସୁଦର୍ଶନ ଆଚାର୍ଯ୍ୟ । ସେ ଜଣେ ସ୍ୱନାମଧନ୍ୟ କ୍ଷୁଦ୍ର ଗଳ୍ପ ସମୀକ୍ଷକ । ପ୍ରଜାତନ୍ତ୍ର ବିଷୁବମିଳନ ପକ୍ଷରୁ ସେ ଅତୀତରେ ଶ୍ରେଷ୍ଠ ସମୀକ୍ଷକ ଭାବେ ବହୁବାର ସମ୍ମାନିତ । ତାଙ୍କ କ୍ଷୁଦ୍ର ଗଳ୍ପ ସଂଚୟନରେ ମୋର ନିହାତି ସୀମିତ ସାହିତ୍ୟ ସୃଷ୍ଟି ମଧ୍ୟରୁ ଗୋଟିଏ କ୍ଷୁଦ୍ର ଗଳ୍ପ ସ୍ଥାନ

ପାଇଥିବାରୁ ଏବଂ ସେ ନିଜେ ଆଜିର ଏହି କ୍ଷୁଦ୍ର ଗଳ୍ପ ଅନୁଷ୍ଠାନର ଜଣେ କର୍ମକର୍ତ୍ତା ହୋଇ ଥିବାରୁ ମୁଁ ଦୈନନ୍ଦିନ ଜୀବନରେ ଯନ୍ତ୍ରୀ ହିସାବରେ ସରକାରୀ ଚାକିରିର ଶୃଙ୍ଖଳ ମୁହୂର୍ତ୍ତମାନଙ୍କ ଭିତରେ ବନ୍ଦୀ ଥିଲେ ମଧ୍ୟ ଏ ପ୍ରକାର ସାହିତ୍ୟ ସମାବେଶକୁ ନିମନ୍ତ୍ରିତ ହୋଇ ପାରିଥିଲି । ବନ୍ଧୁ ସୁଦର୍ଶନ ଆଚାର୍ଯ୍ୟଙ୍କୁ ମନେ ମନେ ଧନ୍ୟବାଦ ଦେବା ସଙ୍ଗେ ସଙ୍ଗେ ମୁଁ ଯାଇ ଟିକିଏ ଡେରିରେ ଆସନ ଗ୍ରହଣ କରି ଯେତେବେଳେ ମୁଖ୍ୟ ଅତିଥିଙ୍କର ବକ୍ତବ୍ୟରେ ମନୋନିବେଶ କରେ, ସେ ଏ ବର୍ଷ ପାଇଁ କ୍ଷୁଦ୍ର ଗଳ୍ପର ସମୀକ୍ଷକ ହିସାବରେ କାହାରି ଗୁଣଗାନ ସମାପ୍ତ କରି ଏକ ପାଟପଟବସ୍ତ୍ର ଲମ୍ବାଇ ଦେବାକୁ ମଞ୍ଚର ଏକ ପାର୍ଶ୍ୱକୁ ଆଗେଇ ଆସିଲେ । ଆଜିର ସେହି ବିଦ୍ୱାନ, ସେଇ ସାହିତ୍ୟିକ ବା ସାହିତ୍ୟର ଦିଗ୍‌ଦର୍ଶକଙ୍କ ଆଡ଼କୁ ମୁଁ ଚାହିଁ ଆଶ୍ଚର୍ଯ୍ୟ ହୋଇଗଲି । ସେ ହେଉଛନ୍ତି ଶ୍ରୀଯୁକ୍ତ ଜୀବନାନନ୍ଦ ଛୋଟରାୟ ।

ଘନ ଘନ କରତାଳିରେ ମୋର ମନର ରୁଦ୍ଧଦ୍ୱାର ସବୁ ଧଡ଼ ଧାଡ଼ କରି ଖୋଲି ଯିବାକୁ ଲାଗିଲା, ଆଉ ସେଇ ନୂତନ ଆଲୋକରେ ମୁଁ ଧୀରେ - ଧୀରେ ମଞ୍ଚର ଅନ୍ୟମାନଙ୍କୁ ଚାହିଁ ଭାବିବାକୁ ଲାଗିଲି– ଭୁଲ ସଭାକୁ ପଶି ଆସିନାହିଁତ ! ନାଁ ଉପରେ ଅଖିଳବାବୁ ବସି ହସୁଛନ୍ତି– ସେ ଏଇ ଅନୁଷ୍ଠାନର ସଭାପତି ।

ହଠାତ୍ ମୋର ମନେପଡ଼ିଲା ଅତୀତର ସେଇ ଖରାଦିନିଆ ରବିବାରର ବିଅର ପାର୍ଟି, ଆଉ ସେଦିନର ମଦୁଆ ପ୍ରଗଳ୍‌ଭତା । ତା ସହ ବି ମନେ ପଡ଼ିଲା ଜଣେ ଗୁଣଚିହ୍ନା ଗୁଣିଆ-ଆଖିର ଅନ୍ୱେଷଣ । ସେଇ ସ୍ୱନାମଧନ୍ୟ ସୁବକ୍ତା-ସାହିତ୍ୟିକ ଗୁଣୀ ଅଖିଳବାବୁଙ୍କ ଏଇ ନୂତନ ମାନବର ସୃଷ୍ଟି । ସେଇ ସକାଳରୁ ସନ୍ଧ୍ୟା, ମଦ ଆଉ ଜୁଆର ଜୀବନ ଭିତରୁ ଟାଣି ଆଣି ଜୀବନ ଛୋଟରାୟକୁ ସମାଜ ଆଖିରେ ସେ ଛିଡ଼ା କରାଇ ଦେଇ ପାରିଛନ୍ତି ଆଜିର ସାହିତ୍ୟାନୁରାଗୀ ଶ୍ରୀଯୁକ୍ତ ଜୀବନାନନ୍ଦ ଛୋଟରାୟ ଭାବେ ।





ସୁ ଲୁ ବ ଗା



ସୁଧୀର କୁମାର ଜଗଦେବ୍ର, ନାରାୟଣ କହିଲେ ହୁଏତ କେହି ଜାଣିବେ ନାହିଁ, ବରଂ ଜାପାନଭାଇ ବୋଲି କହିଲେ ସମସ୍ତେ ଜାଣିବେ । ସରକାରୀ ଚାକିରି ବିଶେଷ କରି ଆ'ଜନସ୍ୱର' ବିଭାଗର ବ୍ୟସ୍ତବହୁଳ ଚାକିରି ମଧ୍ୟରେ ସାହିତ୍ୟ ସେବା ତାଙ୍କର ଏକ ଅନବଦ୍ୟ ଉଦ୍ୟମ ।



ପିତା ସୁନାମଧନ୍ୟ ସଙ୍ଗୀତଜ୍ଞ, ନାଟ୍ୟକାର, ତଥା ଶିଳ୍ପୀ ଶ୍ରୀଯୁକ୍ତ ସୁଧୀର ଚନ୍ଦ୍ର ଓ ମା ଶୈଳବାଳା, ଉଭୟଙ୍କ ସାହିତ୍ୟ ଅନୁରାଗ ଜନ କୁଟରେ ପ୍ରତିଷ୍ଠିତ । ବାଲ୍ୟାବସ୍ଥାରୁ ସୃଷ୍ଟିଶୀଳ ଚେତନା ତଥା ନୂତନ ସୃଷ୍ଟି ଧୂଳି, କଲେଜ ପତ୍ର ପତ୍ରିକାରେ ପ୍ରକାଶିତ କବିତା, ଗଳ୍ପଗୁଡ଼ିକରେ ସୁସ୍ପଷ୍ଟ ।

ବ୍ରହ୍ମପୁରର 'ସୃଷ୍ଟି ସୌରଭ' ଅନୁଷ୍ଠାନର ମୁଖ୍ୟ ପୃଷ୍ଠପୋଷକ ତଥା ଖଲ୍ଲିକୋଟ କଲେଜର ଅଧ୍ୟାପକ ବନ୍ଧୁମାନଙ୍କ ମଧ୍ୟରୁ ସୁଦର୍ଶନ ଆଚାର୍ଯ୍ୟ, ସୁବାସ ପତି, ପ୍ରମୋଦ ସାହୁ, ନାରାୟଣ ଶତପଥୀ, ପ୍ରହ୍ଲାଦ ପଣ୍ଡା ଓ ସଦାଶିବ ପଣ୍ଡା ପ୍ରମୁଖ ବନ୍ଧୁଙ୍କ ଉତ୍ସାହ ଓ ମୁଦ୍ରାକର କରଣ ମିଶ୍ର ଏବଂ ଶଙ୍କର ବିପିନ ସାହୁଙ୍କ ସାହଚର୍ଯ୍ୟରେ ପ୍ରକାଶିତ ହୁଏ ପ୍ରଥମ ଗଳ୍ପ ସଂକଳନ 'ପଇଟତାର ପଇଚନ୍ଦୁ' ।

ଜାପାନଭାଇଙ୍କ "କେତୋଟି ଗଳ୍ପ" ହେଉଛି ଦ୍ୱିତୀୟ ପ୍ରକାଶ । ବିଭିନ୍ନ ସମୟରେ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ।

